ନର୍ମଦା ଉପତ୍ୟକା ପାଇଁ ଚାଲିଥିବା ଆନ୍ଦୋଳନ କେଉଁ ଗୋଟାଏ ସୁଦୂର ମୁଲକର ବିଦେଶୀ ଲଢ଼େଇ ନୁହେଁ, ଗୋଟାଏ ଆଦିବାସୀ ଯୁଦ୍ଧ ନୁହେଁ, ଗୋଟାଏ ଗାଉଁଲି ଲଢ଼େଇ ନୁହେଁ । ଏପରିକି ଏହା କେବଳ ଏକ ଭାରତୀୟ ଯୁଦ୍ଧ ମଧ୍ୟ ନୁହେଁ । ଏ ଲଢ଼େଇ ହେଉଛି ସମଗ୍ର ପୃଥିବୀର ପାହାଡ଼, ଜଙ୍ଗଲ, ନଈମାନଙ୍କ ପାଇଁ । ଏ ଲଢ଼େଇ ପାଇଁ ସାରା ପୃଥିବୀରୁ ଅନେକ ପ୍ରକାରର ଯୋଦ୍ଧା ଦରକାର । ସମସ୍ତଙ୍କୁ ଏ ଆନ୍ଦୋଳନ ସମ୍ମାନ ଜଣାଇବ, ସ୍ୱାଗତ କରିବ । ଡାକ୍ତର, ଶିକ୍ଷକ, ବିଚାରପତି, ସାମ୍ବାଦିକ, ଛାତ୍ର, ଖେଳାଳୀ, ଶିଳ୍ପୀ, ଅଭିନେତା, ଗାୟକ, ପ୍ରେମିକ . . . ।

**ସମସ୍ତଙ୍କ ପାଇଁ ଦ୍ୱାର ଖୋଲା ରହିଛି,**
**ଆସନ୍ତୁ ! ଏହି ଆନ୍ଦୋଳନରେ ମିଶି ଯାଆନ୍ତୁ ।**



*ଆଗ ମଲାଟ:* ଭାଇଜୀ ଭାଇଙ୍କ ଉଜୁଡ଼ା ଘର (ପୃ. ୯୮-୧୦୧)
*ପଛ ମଲାଟ:* 'ବୃହତ୍ତର ସ୍ୱାର୍ଥ' ଅସଂଖ୍ୟ ଛୋଟଙ୍କୁ ଗିଳେ (ଚିତ୍ର *ରାଜା ମହାନ୍ତି*)

# ବିକାଶ ପାଇଁ ବିନାଶ

(ଅରୁନ୍ଧତୀ ରାୟଙ୍କର

**ଦି ଗ୍ରେଟର୍ କମନ ଗୁଡ୍**

ନିବନ୍ଧର ଓଡ଼ିଆ ରୂପାନ୍ତର)


ଶୈଲେନ୍ ରାଉତରାୟ

ନିଖିଳ ମୋହନ ପଟ୍ଟନାୟକ



**ସୃଜନିକା**

ଜାଗମରା, ଡାକ: ଖଣ୍ଡଗିରି,

ଭୁବନେଶ୍ୱର ୭୫୧ ୦୩୦

# ବିକାଶ ପାଇଁ ବିନାଶ

# Bikasha pain Binasha

(ଅରୁନ୍ଧତୀ ରାୟଙ୍କର
**ଦି ଗ୍ରେଟର୍ କମନ ଗୁଡ୍**
ନିବନ୍ଧର ଓଡ଼ିଆ ରୂପାନ୍ତର)

(Oriya rendering of
*Arundhati Roy's*
The Greater Common Good)

*ଅନୁବାଦ*
ଶୈଳେନ୍ ରାଉତରାୟ
ନିଖିଳ ମୋହନ ପଟ୍ଟନାୟକ

*Translation*
Shailen Routray
Nikhil Mohan Pattnaik

*ମୁଦ୍ରଣ*
ରିପ୍ରୋପ୍ରିଣ୍ଟ
ଏନ୍ ୫/୪୩, ଆଇ·ଆର୍·ସି· ଭିଲେଜ୍
ଭୁବନେଶ୍ୱର ୭୫୧ ୦୧୫
ଫୋନ୍: (୦୬୭୪) ୨୫୫୨୦୬୬

*Printing*
Reproprint
N-5/43, IRC Village
Bhubaneswar 751 015
Tel: (0674) 2552066

*ଅଙ୍ଗସଜ୍ଜା ଓ ପ୍ରକାଶନ*
**ସୃଜନିକା**
ଜାଗମରା, ଡାକ: ଖଣ୍ଡଗିରି,
ଭୁବନେଶ୍ୱର ୭୫୧ ୦୩୦
ଫୋନ୍: (୦୬୭୪) ୨୩୫୦ ୬୬୪

*Design, Layout & Publication*
SRUJANIKA
Jagamara, PO: Khandagiri,
Bhubanewsar 751 030
Telephone: (0674) 2350 664

ପ୍ରଥମ ପ୍ରକାଶ: ଫେବୃଆରୀ ୨୦୦୩

First published: February 2003

ଅନୁବାଦ ପାଇଁ ସମ୍ମତି ଦେଇଥିବାରୁ ସୁଶ୍ରୀ ଅରୁନ୍ଧତୀ ରାୟଙ୍କ ପାଖରେ ଏବଂ ଚିତ୍ର ପାଇଁ ଫ୍ରଣ୍ଟଲାଇନ ପତ୍ରିକା ପାଖରେ ଆମେ କୃତଜ୍ଞ ।

ମୂଲ୍ୟ: ଟ ୨୦.୦୦

Price: Rs.20.00

# ଭୂମିକା

ଦେଶ ଓ ଦୁନିଆ ପ୍ରବଳ ଭାବରେ ବଦଳୁଛି । ମଣିଷର ଚେତନାକୁ ଚାରିଆଡୁ ଧକ୍କା ଲାଗୁଛି । ଏହି ବଦଳୁଥିବା ଦୁନିଆର କେତେକ ମୁଖ୍ୟ ପ୍ରସଙ୍ଗକୁ ଆମେ ଯଦି ଠିକ ଭାବରେ ଧରି ନପାରିବା ତାହେଲେ ଆମର ବୁଦ୍ଧି ବଣା ହୋଇଯିବ ଏବଂ କିଏ ଜଣେ ମଜବୁତିଆ ଲୋକ ଆମକୁ ଠେଙ୍ଗା ଦେଖାଇ କୁଆଡ଼କୁ ଠେଲି ନେଇଯିବ ।

ଗୋଟିଏ ପଟେ କାରଖାନାମାନେ, ଯନ୍ତ୍ରମାନେ ଏବଂ କମ୍ପାନୀମାନେ ବହୁତ ବଡ଼ ଆକାର ଧାରଣ କରୁଛନ୍ତି ତ ଅନ୍ୟ ପଟେ ଜଙ୍ଗଲ, ପାହାଡ଼ ପଦା ହେଉଛି । ନଦୀ ଶୁଖିଯାଉଛି କିମ୍ବା ବିକ୍ରି ମଧ୍ୟ ହୋଇଯାଉଛି । ଚାଷୀ, ମୂଲିଆ ଓ କ୍ଷୁଦ୍ରଶିଳ୍ପର କାରିଗରମାନଙ୍କ କୁଡ଼ିଆ ଘର ଓ ଜୀବିକାର ଆଧାର ଧ୍ୱସ୍ତ ହୋଇପଡୁଛି ।

ଆଜିକା ସମୟର ଗୋଟିଏ ବଡ଼ ପ୍ରଶ୍ନ ହୋଇଛି କାହାର ପକ୍ଷ ନେବା । ବଡ଼ ବଡ଼ ଯନ୍ତ୍ର ଓ ମହାକମ୍ପାନୀମାନଙ୍କୁ ସ୍ୱାଗତ କରିବା କି ଉଜୁଡ଼ି ଯାଉଥିବା ଜୀବିକା ଓ କୁଡ଼ିଆମାନଙ୍କୁ "ରକ୍ଷାକର", "ଭାଙ୍ଗନାହିଁ" ବୋଲି କହିବା ?

ନିଜ ବୁଦ୍ଧିକୁ ସ୍ୱଚ୍ଛ କରିବା ନିମନ୍ତେ ଏବଂ ଚେତନାର ଭାରସାମ୍ୟକୁ ସମତୁଲ ରଖିବା ନିମନ୍ତେ ଆମକୁ ଉଭୟ ପକ୍ଷକୁ ଶୁଣିବାକୁ ହେବ । ଧନୀଶ୍ରେଣୀ ଏବଂ କମ୍ପାନୀମାନଙ୍କର ପକ୍ଷକୁ ବଡ଼ ବଡ଼ ଖବର କାଗଜ ଓ ଦୂରଦର୍ଶନ ତଥା ସରକାରୀ ମୁଖପାତ୍ରମାନେ

ଅହରହ ମୁଖରିତ କରୁଛନ୍ତି । ଅନ୍ୟ ପକ୍ଷକୁ ରଖିବା ପାଇଁ ଏକ ସମାନ୍ତରାଳ ବା ବିକଳ୍ପ ସାହିତ୍ୟ ସୃଷ୍ଟି ହେଉଛି । ତାହାର ଜଣେ ଅଗ୍ରଣୀ ହେଉଛନ୍ତି ପ୍ରସିଦ୍ଧ ଲେଖିକା ଅରୁନ୍ଧତୀ ରାୟ । ନର୍ମଦାର ପ୍ରବାହକୁ ଅଟକାଇ ରଖିବା ପାଇଁ ନଦୀ ବକ୍ଷରେ ଯେଉଁ ବିଶାଳ ବନ୍ଧମାନଙ୍କର ନିର୍ମାଣ ଚାଲିଛି ସେଗୁଡ଼ିକର ବିଡ଼ମ୍ବନାମୟ ପରିଣତି ବିଷୟରେ *ଦି ଗ୍ରେଟର କମନ ଗୁଡ୍* (ବହୁଜନ ହିତାୟ) ନାମରେ ସେ ଯେଉଁ ପ୍ରବନ୍ଧଟି ଲେଖିଥିଲେ ତାହାର ଅନେକ ଭାଷାରେ ଅନୁବାଦ ହୋଇସାରିଛି ।

ପ୍ରସ୍ତୁତ ଓଡ଼ିଆ ଅନୁବାଦକୁ ଯେଉଁମାନେ ପ୍ରକାଶିତ କରୁଛନ୍ତି ସେମାନଙ୍କର ଉଦ୍ଦେଶ୍ୟ କେବଳ ଓଡ଼ିଆ ପାଠକମାନଙ୍କୁ ଆକୃଷ୍ଟ କରିବା ନୁହେଁ । ଏହାକୁ ପାଠ କରିବା ଲୋକେ, ବିଶେଷ କରି ତରୁଣମାନେ, ଯଦି ପୁସ୍ତକରେ ସନ୍ନିହିତ ତଥ୍ୟ ଓ ତତ୍ତ୍ୱର ଆଲୋକରେ ନିଜର ଚିନ୍ତାକୁ ଖେଳାଇ ପାରିବେ ଓ ଚତୁଃପାର୍ଶ୍ୱରେ ବ୍ୟାପୀ ରହିଥିବା ନିଶ୍ଚେଷ୍ଟତାକୁ ଭଙ୍ଗ କରି ନିଜର ଏକ ଭୂମିକା ଗ୍ରହଣ କରିପାରିବେ ତାହେଲେ ପ୍ରକାଶନ ସାର୍ଥକ ହେବ ।

କିଶନ ପଟ୍ଟନାୟକ

## ମୁଖବନ୍ଧ

ଅରୁନ୍ଧତୀ ରାୟଙ୍କର ଇଂରାଜୀ ମୂଳଲେଖା ଦି **ଗ୍ରେଟର୍ କମନ୍ ଗୁଡ୍** ଭାରତର ମଧ୍ୟମ ବର୍ଗର ବୁଦ୍ଧିଜୀବୀମାନଙ୍କ ଭିତରେ ବେଶ ଜନପ୍ରିୟ ହୋଇପାରିଛି । ଏହି ଜନପ୍ରିୟତାର କେତୋଟି ନିର୍ଦ୍ଦିଷ୍ଟ କାରଣ ଥାଇପାରେ । ପ୍ରଥମତଃ ବହିଟି ଜଣେ ଖ୍ୟାତନାମା ଲେଖିକାଙ୍କ ଦ୍ୱାରା ଲେଖାଯାଇଛି । ଦ୍ୱିତୀୟତଃ, ଏକ ସମସାମୟିକ ଜନ ଆନ୍ଦୋଳନ

ପୃଷ୍ଠଭୂମିରେ ଲେଖାଟି ପ୍ରସ୍ତୁତ କରାଯାଇଛି । ତୃତୀୟ କାରଣଟି ହେଲା ଲେଖାଟିରେ ଆମ ବିକାଶ ପ୍ରକ୍ରିୟାର ଯୁକ୍ତିଯୁକ୍ତତାକୁ ନେଇ କେତେକ ମୌଳିକ ପ୍ରଶ୍ନ ଉତ୍‌ଥାପନ କରାଯାଇଛି । ପ୍ରଥମ କାରଣ ନୁହେଁ ବରଂ ପରବର୍ତ୍ତୀ ଦୁଇଟି କାରଣ ହିଁ ଆମକୁ ଅନୁପ୍ରାଣିତ କରିଛି ଏହି ବହିଟିର ଓଡ଼ିଆ ଅନୁବାଦ ପାଇଁ । ଏକଥା କହିବା ଆଦୌ ଉଚିତ ହେବନି ଯେ ଏହି ବହିଟିରେ ଉଠାଯାଇଥିବା ପ୍ରଶ୍ନ ସମ୍ପୂର୍ଣ୍ଣ ଭାବେ ନୂଆ ଏବଂ ଅନ୍ୟ କେହି କେବେ ଏ ପ୍ରଶ୍ନ ଉଠାଇ ନାହାନ୍ତି । ବରଂ ଏହି ବହିଟିରେ ଲେଖିକା ଏକ ଜନପ୍ରିୟ ଶୈଳୀରେ ଏବଂ ଏକ ଜନ ଆନ୍ଦୋଳନର ଜୀବନ୍ତ ଅନୁଭୂତିକୁ ଭିତ୍ତି କରି ଏହି ପ୍ରଶ୍ନଗୁଡ଼ିକ ଉଠାଇଛନ୍ତି । ସେଇ ଦୃଷ୍ଟିରୁ ଏହି ପୁସ୍ତକଟି ଭିନ୍ନ ଏବଂ ଗ୍ରହଣୀୟ । ଲେଖିକାଙ୍କ ବ୍ୟକ୍ତିତ୍ୱ, ତାଙ୍କ ସାମାଜିକ ଅଙ୍ଗୀକାରବଦ୍ଧତା ବା ଜୀବନ ଦର୍ଶନ ସହ ଆମର କୌଣସି ସମ୍ପର୍କ ନାହିଁ । ଯେଉଁ ସମସ୍ୟାବହୁଳ ପରିସ୍ଥିତି ନେଇ ଆମ ସମାଜ ଗତି କରୁଛି, ପ୍ରଚଳିତ ବିକାଶ ପ୍ରକ୍ରିୟାକୁ ନେଇ ପ୍ରଶ୍ନ କରୁଥିବା ଲେଖାଗୁଡ଼ିକ ବ୍ୟାପକ ଭାବେ ଲୋକଙ୍କ ନିକଟରେ ପହଞ୍ଚିବା ଦରକାର – ଏଭଳି ଏକ ବୁଝାମଣାକୁ ଆଧାର କରି ଏହି ବହିଟିର ଓଡ଼ିଆରେ ଭାଷାନ୍ତର କରାଯାଇଛି ।

ବିକାଶର ଯେଉଁ ଢାଞ୍ଚାକୁ ଗତ ପଚାଶ ବର୍ଷ ଧରି ରାଷ୍ଟ୍ର ଆପଣାର କରିଛି, ତାକୁ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣର ଅତ୍ୟାଧୁନିକ ପର୍ବ (ଯାହାକି ୯୦ ଦଶକରୁ ଆରମ୍ଭ ହୋଇଛି) ଅଧିକ ତ୍ୱରାନ୍ୱିତ ଓ ଅଧିକ ଆକ୍ରମଣାତ୍ମକ କରିପାରିଛି । ଏହି ପ୍ରକ୍ରିୟାର ହିଂସ୍ର ପରିଣାମ ସ୍ୱରୂପ ଯେଉଁମାନେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଆସିଛନ୍ତି ସେମାନଙ୍କ ଭିତରେ ଅଛନ୍ତି ଆଦିବାସୀ, ଦଳିତ ଓ ଶ୍ରମିକ ଶ୍ରେଣୀର ଲୋକେ । ସବୁଠାରୁ ଅଧିକ ବିପର୍ଯ୍ୟସ୍ତ ହୋଇଛି ଜଳ, ଜମି ଓ ଜଙ୍ଗଲ – ଯେଉଁ ପ୍ରାକୃତିକ ସମ୍ପଦ ଉପରେ ନିର୍ଭର

କରି ଏମାନେ ଚଳି ଆସୁଥିଲେ । କୋଟି କୋଟି ଲୋକଙ୍କର ଜୀବନ ଜୀବିକା ବିପନ୍ନ ହେବାରେ ଲାଗିଛି । ବୃହତ ନଦୀବନ୍ଧ, ବଡ଼ ବଡ଼ ଶିଳ୍ପ ଓ କାରଖାନା, ଖଣି ଖାଦାନ ଇତ୍ୟାଦିର ରୂପରେ ବିକାଶ ନାଁରେ ଯେଉଁ ବିନାଶର ପ୍ରକ୍ରିୟା ଚାଲିଛି, ସବୁ ସମୟରେ ତାକୁ ବୃହତ୍ତର ସାଧାରଣ ସ୍ୱାର୍ଥର ଆଖ୍ୟା ଦିଆଯାଇଛି । ଏଥିପାଇଁ ତ୍ୟାଗ କରିବେ ଲକ୍ଷ ଲକ୍ଷ, କୋଟି କୋଟି ଆଦିବାସୀ ଦଳିତ ତଥା ଅବହେଳିତ ବର୍ଗର ଲୋକେ । ସେମାନେ ପ୍ରଶ୍ନ କରିପାରିବେ ନାହିଁ କାହା ପାଇଁ ସେମାନେ ତ୍ୟାଗ କରିବେ, କିଏ ସେ ତ୍ୟାଗର ଫାଇଦା ନେବେ ଏବଂ କେତେ ଦିନ, କେତେ ପୁରୁଷ ଧରି ସେମାନେ ଏଭଳି ତ୍ୟାଗ କରି ଚାଲିଥିବେ ।

ପ୍ରାକ୍‌ସ୍ୱାଧୀନତା କାଳର ହୀରାକୁଦ ନଦୀବନ୍ଧଠାରୁ ଆରମ୍ଭ କରି ଏବକାର କାଶୀପୁର ଆଲୁମିନା ପ୍ରକଳ୍ପ ଯାଏଁ - ପ୍ରତ୍ୟେକଟି ଏହି 'ବୃହତ୍ତର ସ୍ୱାର୍ଥର' ଗୋଟିଏ ଗୋଟିଏ ନମୁନା ଯାହାକି ଆମ ରାଜ୍ୟରେ ଆମ ସାମ୍ନାରେ ରଖାଯାଇଛି । ହୀରାକୁଦ ବନ୍ଧ, ରାଉରକେଲା ଲୁହା କାରଖାନା, ସୁନାବେଡ଼ା ମିଗ୍ କାରଖାନା, ଦାମନଯୋଡ଼ିରେ ନାଲ୍‌କୋର ଆଲୁମିନା ଶିଳ୍ପ, ତାଳଚେର ଥର୍ମାଲ ପାୱାର୍ ପ୍ଲାଣ୍ଟ, ରେଙ୍ଗାଲି ନଦୀବନ୍ଧ, ଇନ୍ଦ୍ରାବତୀ ପ୍ରକଳ୍ପ ଇତ୍ୟାଦି କାହାକୁ ଲାଭବାନ କରୁଛି ତାହାର ହିସାବ ଅନ୍ତତଃ ସେମାନଙ୍କ ପାଖରେ ନାହିଁ, ଯେଉଁମାନେ ଏହି ସବୁ 'ବୃହତ୍ତର ସାଧାରଣ ସ୍ୱାର୍ଥ' ପାଇଁ ଭିଟାମାଟି, ଜମି, ଜଙ୍ଗଲ ଛାଡ଼ିବା ପାଇଁ ଦିନେ ବାଧ୍ୟ ହୋଇଥିଲେ । ସେମାନଙ୍କ ଭିତରୁ ଅନେକ ଆଜି ସର୍ବହରା, ଅନେକଙ୍କ ଠିକଣା ନାହିଁ ଏବଂ ଆଉ ଅନେକ ଏବେ ବି କ୍ଷତିପୂରଣ ଆଶାରେ ଚାହିଁ ବସିଛନ୍ତି । ଲାଭ ନିଶ୍ଚୟ କିଛି ଲୋକଙ୍କର ହୋଇଛି । ତେବେ ସେମାନେ କିଏ, ସେମାନଙ୍କ ସଂଖ୍ୟା କେତେ, ଏବଂ

ସେମାନେ 'ବୃହତ୍ତର ସାଧାରଣ ସ୍ୱାର୍ଥ' ପାଇଁ କ'ଣ ତ୍ୟାଗ କରିଛନ୍ତି - ଏ ପ୍ରଶ୍ନ ଏବଂ ତାହାର ପ୍ରତିଧ୍ୱନି କେତେକ ଅଞ୍ଚଳରେ ଶୁଣିବାକୁ ମିଳିଲାଣି । ବୃହତ୍ତର ସାଧାରଣ ସ୍ୱାର୍ଥ ବା ସାର୍ବଜନୀନ ଉନ୍ନତିର ସଂଜ୍ଞା କ'ଣ ଓ କିଏ ସେ ସଂଜ୍ଞା ନିରୂପଣ କରୁଛି - ଏଭଳି କିଛି ପ୍ରଶ୍ନ ବି ଏବେ ଶୁଣିବାକୁ ମିଳିଲାଣି ।

ଆଜି ଯଦି କେବଳ ଓଡ଼ିଶା କଥା ଦେଖାଯାଏ, ବୃହତ୍ତର ସାଧାରଣ ସ୍ୱାର୍ଥ ପାଇଁ ବଳି ପଡ଼ିଥିବା ଲୋକେ ନିଜର ଭବିଷ୍ୟତର ବଂଶଧରମାନଙ୍କୁ ଆଉ ବଳିଦେବା ପାଇଁ ପ୍ରସ୍ତୁତ ନୁହନ୍ତି - ଏହି ବାର୍ତ୍ତାଟି ଅନ୍ତତଃ ସ୍ପଷ୍ଟ ଭାବେ ଶୁଣିବାକୁ ମିଳିଲାଣି । କାଶୀପୁର, ଗନ୍ଧମାର୍ଦ୍ଦନ, ଗୋପାଳପୁରରେ ଏହି ଲୋକମାନେ ସ୍ୱର ଉଠାଇ ଆସିଛନ୍ତି । ଏହି ସ୍ୱରର ପ୍ରତିଧ୍ୱନି ଶାସକମାନଙ୍କ ପାଖରେ ନ ପହଞ୍ଚିଲେ ବି ସଂବେଦନଶୀଳ ଲୋକମାନଙ୍କ କାନ ପାଖରେ ପହଞ୍ଚିଲାଣି । ବର୍ତ୍ତମାନ ସମୟ ଆସିଛି, ଓଡ଼ିଶାରେ ପଢ଼ିବା ଓ ଲେଖିବା ଲୋକମାନେ ଏହି ସ୍ୱରକୁ ଚିହ୍ନନ୍ତୁ ଏବଂ ବୃହତ୍ତର ସାଧାରଣ ସ୍ୱାର୍ଥର ସଂଜ୍ଞା ନିରୂପଣ କରିବାରେ ଏହି ସଂଗ୍ରାମରତ ଲୋକମାନଙ୍କୁ ସହଯୋଗ କରନ୍ତୁ ।

*ଦି ଗ୍ରେଟର୍ କମନ୍ ଗୁଡ୍* ବହିଟିର ଓଡ଼ିଆ ଭାଷାନ୍ତର ଏ ଦିଗରେ କିଛିଟା ଖୋରାକ ଯୋଗାଇବ ବୋଲି ଆମର ଆଶା ଓ ବିଶ୍ୱାସ ।

ଅଶୋକ କୁମାର ବାବୁ



*“ଯଦି ତୁମର ଯାତନା ହିଁ ଭୋଗିବାର ଅଛି,
ତେବେ ଦେଶର ସ୍ୱାର୍ଥ ତାହା ଭୋଗିବା ଉଚିତ ।”*

୧୯୪୮ ମସିହାରେ ହୀରାକୁଦ ବନ୍ଧ ଯୋଗୁ ବାସହରା ହେବାକୁ ଯାଉଥିବା ଲୋକଙ୍କ ପାଇଁ ଜବାହରଲାଲ ନେହେରୁଙ୍କ ଭାଷଣର ଅଂଶ ।

ମୁଁ ଗୋଟିଏ ପାହାଡ଼ ଉପରେ ଛିଡ଼ାହେଲି ଆଉ ବଡ଼ପାଟିରେ ହସିଉଠିଲି ।

ମୁଁ ଜଲସିନ୍ଧିଠାରୁ ଡଙ୍ଗାରେ ନର୍ମଦା ପାରିହୋଇ ନଈର ଆର ପଟରେ ଛିଡ଼ା ହୋଇଥିଲି । ଆଉ ସେଠାରୁ କିଛି ଦୂରରେ ଛୋଟ ଛୋଟ ନଣ୍ଡା ପାହାଡ଼ ଉପରେ ବିଛାଡ଼ି ହୋଇ ପଡ଼ିଥିବା ଚାରୋଟି ଆଦିବାସୀ ଗାଁ ଦେଖାଯାଉଥିଲା । ସେହି ଗାଁଗୁଡ଼ିକ ଥିଲେ ସିକ୍କା, ସୁରୁଙ୍ଗ୍, ନିମ୍‌ଗବନ୍ ଆଉ ଡମ୍‌ଖେଡ଼ି । ମୋତେ ସେ ଗାଁଗୁଡ଼ିକର ଖୋଲା, ଦୁର୍ବଳ ଘରଗୁଡ଼ାକ ବି ସ୍ପଷ୍ଟ ଦେଖାଯାଉଥିଲା । ଆଉ ବି ଦେଖାଯାଉଥିଲା ସେ ଘର ସବୁର ପଛରେ ଥିବା ଚାଷଜମି ଓ ଜଙ୍ଗଲ । ମୁଁ ଦେଖିପାରୁଥିଲି ଛେଳି ପଲଙ୍କୁ ଜଗିଥିବା ଛୋଟ ପିଲାମାନଙ୍କୁ । ଦୂରରୁ ସେ ଛେଳିଗୁଡ଼ିକ ଏଣେ ତେଣେ ଦୌଡ଼ୁଥିବା କିଛି ଯନ୍ତ୍ରଚାଳିତ ଚିନାବାଦାମ ଭଳି ଦେଖାଯାଉଥିଲେ । ମୁଁ ଜାଣିବାରେ ମୁଁ ଦେଖୁଥିବା ସେହି ସଭ୍ୟତା ଥିଲା ହିନ୍ଦୁଧର୍ମଠାରୁ ବି ପୁରୁଣା । ଏକ ସଭ୍ୟତା ଯାହା ଦେଶର ସର୍ବୋଚ୍ଚ ନ୍ୟାୟାଳୟର ଅନୁମୋଦନ ସହ ଏଇ ବର୍ଷାଦିନରେ ସର୍ଦ୍ଦାର ସରୋବର ଜଳଭଣ୍ଡାରର ଉଛୁଳା ପାଣିରେ ବୁଡ଼ିଯିବ ।

କିନ୍ତୁ ମୁଁ ହସିଲି କାହିଁକି?

କାରଣ ଥିଲା ନିଷ୍ଚୟ। ହଠାତ ମୋର ଗୋଟାଏ କଥା ମନେପଡ଼ିଲା। ସୁପ୍ରିମକୋର୍ଟରେ ମାନ୍ୟବର ବିଚାରପତିମାନେ ସର୍ଦ୍ଧାର ସରୋବର ବନ୍ଧ ନିର୍ମାଣ ଉପରେ ରହିତାଦେଶ ଉଠାଇବା ସମୟର କଥା। ବନ୍ଧ ନିର୍ମାଣ ଉପରେ କଟକଣା ଉଠାଇବା ଆଗରୁ କରୁଣା ବିଗଳିତ ହୃଦୟରେ ସେମାନେ ପଚାରିଥିଲେ କି ପୁନର୍ବାସ କଲୋନୀରେ ପିଲାମାନେ ଖେଳିବା ପାଇଁ ପାର୍କ ଅଛି ନା ନାହିଁ। ଆଉ ସରକାରୀ ଓକିଲ ତତ୍‌କ୍ଷଣାତ ମାନ୍ୟବର ବିଚାରପତିମାନଙ୍କୁ ନିର୍ଭରଯୋଗ୍ୟ ପ୍ରତିଶ୍ରୁତି ଦେଲେ ଯେ ସରକାର ପିଲାଙ୍କୁ ଖେଳିବା ପାଇଁ ନିଷ୍ଚିତ ଭାବରେ ପାର୍କ ଯୋଗାଇ ଦେବେ। ଆଉ ସେ ପାର୍କଗୁଡ଼ିକରେ ଖେଳିବା ପାଇଁ ଖସଡ଼ା, ଢେଙ୍କି ଓ ଦୋଳି ଆଦି ସରଞ୍ଜାମ ମଧ୍ୟ ରହିବ। ମୁଣ୍ଡ ଟେକି ମୁଁ ଅନନ୍ତ ଆକାଶକୁ ଚାହିଁଲି, ତା'ପରେ ଚାହିଁଲି ତଳକୁ, ଅବିରତ ଗତିରେ ବୋହିଯାଉଥିବା ନଈ ଆଡ଼କୁ। ଆଉ, ଏକ ଅତି ଛୋଟ ମୁହୂର୍ତ୍ତ ପାଇଁ ଏ ସବୁକିଛିର ପ୍ରଚଣ୍ଡ ଉଦ୍ଭଟତା ମୋର ରାଗକୁ ଓଲଟାଇଦେଲା, ତେଣୁ ମୁଁ ହସିଦେଲି। ହେଲେ ମୋର ସେ ହସରେ କାହା ପାଇଁ ଅସମ୍ମାନ ନଥିଲା।

ଆରମ୍ଭରୁ କିଛି କଥା ମୁଁ ସ୍ପଷ୍ଟ କରିଦିଏ। ମୁଁ ଆଦୌ ସହର ବିରୋଧୀ ନୁହେଁ। ଗାଁ'ରେ ବି ମୁଁ କିଛି ସମୟ ବିତେଇଛି। ଆଉ ଗ୍ରାମୀଣ ଜୀବନର ବିଛିନ୍ନତା, ବୈଷମ୍ୟ ଓ ସମ୍ଭାବ୍ୟ ନିର୍ମମତା ବିଷୟରେ ବି ମୋର କିଛି ଧାରଣା ଅଛି। ମୁଁ ପ୍ରଗତି-ବିରୋଧୀ ନୁହେଁ। ପ୍ରାଚୀନ ପରମ୍ପରା ଓ ସଂସ୍କୃତିକୁ ସବୁକାଳ ପାଇଁ ବଞ୍ଚାଇରଖିବା ଦିଗରେ ପ୍ରଚାର କରିବାର ମାନସିକତା ମଧ୍ୟ ମୋର ନାହିଁ। କିନ୍ତୁ ମୁଁ ସବୁବେଳେ କୌତୁହଳରେ ଭରା। ସେହି କୌତୁହଳ ହିଁ ମୋତେ ନର୍ମଦା ଉପତ୍ୟକାକୁ ଟାଣିଆଣିଛି। ମୋର ଲେଖକ

ପ୍ରବୃତ୍ତି କହିଲା ଯେ ଏଠି ଗୋଟିଏ ମହାଭାରତୀୟ କାହାଣୀ ଅଛି । ଏଠାରେ ଦୁଇଟି ପକ୍ଷ ଭିତରେ ଯୁଦ୍ଧର ବିଭାଜିକା ରେଖା ଅତି ସ୍ପଷ୍ଟ ଏବଂ ସେହି ରେଖାର ଦୁଇପଟରେ ଯୁଦ୍ଧକାମୀ ସେନା ଲଢ଼େଇ ପାଇଁ ପ୍ରସ୍ତୁତ । ଏହା ଏପରି ଏକ ଲଢ଼େଇ ଯେଉଁଥିରେ ଉପସ୍ଥିତ ଅଛନ୍ତି ଏହି ସଭିଏଁ – ଆଶା, କ୍ରୋଧ, ସୂଚନା, ମିଥ୍ୟାଚାର, ରାଜନୈତିକ ଅଭିସନ୍ଧି, ଯାନ୍ତ୍ରିକ ଉଚ୍ଚାକାଂକ୍ଷା, ସମାଜବାଦର ଛଳନା, ଉଗ୍ର କ୍ରିୟାଶୀଳତା, ଅମଲାତାନ୍ତ୍ରିକ ଦୁରାଭିସନ୍ଧି, ବିଭ୍ରାନ୍ତ ଭାବାବେଗ । କହିବା ବାହୁଲ୍ୟ ଯେ ଏଠାରେ ମଧ୍ୟ ଉପସ୍ଥିତ ଅଛି ସେହି ସର୍ବବ୍ୟାପୀ ଓ ପ୍ରାୟତଃ ସନ୍ଦେହଜନକ ଆନ୍ତର୍ଜାତିକ ଆର୍ଥିକ ସହାୟତାର ରାଜନୀତି ।

ମୋ ଲେଖକୀୟ ପ୍ରବୃତ୍ତି ମୋତେ ବାଧ୍ୟ କଲା ଜଏସ୍ ଓ ନାବୋକୋଭ୍‌ଙ୍କୁ ଆଡ଼େଇ ଥୋଇବା ପାଇଁ । ମୋତେ ଆହୁରି ମଧ୍ୟ ବାଧ୍ୟକଲା ଡନ୍ ଡିଲିଲୋଙ୍କ ମୋଟା ବହି ପଢ଼ାକୁ ସ୍ଥଗିତ ରଖିବା ପାଇଁ, ଆଉ ତା ବଦଳରେ ଜଳସେଚନ ଓ ଜଳ ନିଷ୍କାସନ ଉପରେ ରିପୋର୍ଟ ପଢ଼ିବା ପାଇଁ । ବାଧ୍ୟ କଲା ଦୁନିଆ ସାରାର ନଦୀବନ୍ଧମାନଙ୍କ ଉପରେ ଲେଖା ହୋଇଥିବା ନିବନ୍ଧ ଓ ବହି ପଢ଼ିବା ପାଇଁ ଏବଂ ସେଗୁଡ଼ିକ ଉପରେ ତିଆରି ହୋଇଥିବା ପ୍ରାମାଣିକ ଚଳଚ୍ଚିତ୍ର ଦେଖିବା ପାଇଁ । ସେ ପ୍ରବୃତ୍ତି ମୋତେ ବାଧ୍ୟ କଲା ବଡ଼ ବଡ଼ ବନ୍ଧ ତିଆରି ପଛରେ ଥିବା କାରଣକୁ ଏବଂ ସେଗୁଡ଼ିକ କରୁଥିବା କାମକୁ ବୁଝିବା ପାଇଁ ।

ମୋର ପ୍ରଥମ କେଇଟି ଦ୍ୱିଧାମିଶା ପ୍ରଶ୍ନରୁ ମୁଁ ଜାଣିଗଲି ଯେ ନର୍ମଦା ଉପତ୍ୟକାରେ ପ୍ରକୃତରେ ହେଉଛି କ'ଣ ତାହା ଖୁବ୍ କମ୍ ଲୋକ ଜାଣନ୍ତି । ଆଉ ଯେଉଁମାନେ ଜାଣିଛନ୍ତି, ସେମାନେ ବହୁତ କିଛି ଜାଣନ୍ତି । ଅଧିକାଂଶ ଲୋକଙ୍କର କିଛି ଧାରଣା ହିଁ ନାହିଁ । କିନ୍ତୁ

ପ୍ରାୟ ସମସ୍ତଙ୍କର ଏ ବିଷୟରେ ଦୃଢ଼ ମତ ରହିଛି । କେହି ବି ଏ ବିଷୟରେ ନିରପେକ୍ଷ ନୁହେଁ । ଅତି ଶୀଘ୍ର ମୁଁ ବୁଝିଗଲି ଯେ ମୁଁ ଏକ ବିସ୍ଫୋରକ ଭରା ଅଞ୍ଚଳକୁ ପଶିଆସିଛି ।

ଭାରତରେ ଗତ ଦଶବର୍ଷ ଧରି ସର୍ଦ୍ଦାର ସରୋବର ବନ୍ଧ ବିରୁଦ୍ଧରେ ଚାଲିଥିବା ସଂଗ୍ରାମ ମାତ୍ର ଗୋଟିଏ ନଈ ପାଇଁ ସଂଗ୍ରାମଠାରୁ ଢେର ଅଧିକ କଥାର ପ୍ରତୀକ ହୋଇଯାଇଛି । ଏହା ହିଁ ହେଉଛି ସେ ସଂଗ୍ରାମର ଶକ୍ତି ଏବଂ ଦୁର୍ବଳତା ମଧ୍ୟ । କିଛି ବର୍ଷ ତଳେ ଏହା ଜନମାନସ ଉପରେ ବିଶେଷ ପ୍ରଭାବ ପକାଇଥିବା ଏକ ବିତର୍କ ରୂପରେ ଛିଡ଼ାହୋଇଥିଲା । ଏଇ କଥା ହିଁ ସେ ସଂଗ୍ରାମର ଗୁରୁତ୍ୱ ବଢ଼ାଇବା ସହିତ ତା'ର ରୂପରେଖକୁ ବଦଳାଇଦେଲା । ଗୋଟିଏ ନଦୀ ଉପତ୍ୟକାର ଭବିଷ୍ୟତ ପାଇଁ ଏକ ସଂଗ୍ରାମର ରୂପରୁ ଯାଇ ତାହା ପୂରା ରାଜନୈତିକ ବ୍ୟବସ୍ଥା ଉପରେ ପ୍ରଶ୍ନ ଉଠାଇଲା । ବର୍ତ୍ତମାନ ଏହାର ମୂଳ ପ୍ରଶ୍ନ ହେଉଛି ଭାରତୀୟ ଗଣତନ୍ତ୍ରର ଚରିତ୍ର ଉପରେ । ପ୍ରଶ୍ନ ଉଠୁଛି - ଏ ଭୂମି କାହାର? ଏ ନଈମାନଙ୍କର ମାଲିକ କିଏ? ଏ ଜଙ୍ଗଲ ସବୁର? ଏବଂ ମାଛର? ଏ ସବୁ ପ୍ରଶ୍ନ ଅତି ଗଭୀର । ରାଷ୍ଟ୍ର ମଧ୍ୟ ଏହି ସବୁ ପ୍ରଶ୍ନକୁ ଅତି ଗୁରୁତ୍ୱର ସହିତ ଦେଖୁଛି । ଆଉ ରାଷ୍ଟ୍ରର ସବୁ ଅନୁଷ୍ଠାନ - ସେନା ବାହିନୀ, ପୁଲିସ, ଅମଲାତନ୍ତ୍ର, ନ୍ୟାୟାଳୟ - ଗୋଟିଏ କଣ୍ଠରେ ଉତ୍ତର ଦେଉଛନ୍ତି । ସେହି ସମସ୍ତଙ୍କର ମିଳିତ ଉତ୍ତର ଆସୁଛି ଦ୍ୱିଧାହୀନ ଭାବରେ, ତିକ୍ତ ଆଉ କ୍ରୁର ଧାରାରେ ।

ଉପତ୍ୟକାର ସଂଗ୍ରାମୀମାନଙ୍କ ତୂଣୀରରେ ସବୁଠାରୁ ଶାଣିତ ତୀର ଥିଲା ଏଇ ନିର୍ଦ୍ଦିଷ୍ଟ ଉପତ୍ୟକାର ନିର୍ଦ୍ଦିଷ୍ଟ ତଥ୍ୟ ଆଧାରିତ ନିର୍ଦ୍ଦିଷ୍ଟ ସମସ୍ୟାର ଆଲୋଚନା । କିନ୍ତୁ ଏ ସଂଗ୍ରାମର ତାତ୍ତ୍ୱିକ ଏବଂ ପ୍ରାୟୋଗିକ ପରିଧି ଅତି ବ୍ୟାପକ ହୋଇଯିବା ଫଳରେ ସେ ତୀରର

ମୂନ ମରିଯାଇଛି । ତର୍କର ମୂଳଭିତ୍ତିକୁ ଟାଣିଭିଡ଼ି ବଢ଼ାଇବା ଫଳରେ ତାହା ଫୁଲି ଫୁଲି ଫାଟିଯାଇଛି ଓ ଟୁକୁଡ଼ା ଟୁକୁଡ଼ା ହୋଇ ଭାସିଯାଇଛି । ବେଳେ ବେଳେ ଗୋଟାଏ ବିଚ୍ଛିନ୍ନ ଖଣ୍ଡ ଆଖି ଆଗକୁ ଭାସିଆସୁଛି - ତାହା ହୋଇପାରେ ସରକାରୀ କଳର ଲୋକଙ୍କ ପ୍ରତି ହୃଦୟହୀନ ବ୍ୟବହାର ଉପରେ ଏକ ଆବେଗଭରା ରିପୋର୍ଟ, ହୋଇପାରେ ନର୍ମଦା ବଚାଓ ଆନ୍ଦୋଳନର କିଛି କର୍ମକର୍ତ୍ତାଙ୍କର ଦେଶ ବିରୋଧୀ କାମର ଅଭିଯୋଗ, କିମ୍ବା ନ୍ୟାୟାଳୟରେ ନର୍ମଦା ବଚାଓ ଆନ୍ଦୋଳନର ରିଟ୍ ପିଟିସନ୍ ଉପରେ ଜଣେ ଆଇନ-ଅଦାଲତ ସାମ୍ବାଦିକଙ୍କର ଏକ ରିପୋର୍ଟ ।

ନର୍ମଦା ବିଷୟରେ ଏବଂ ନର୍ମଦା ଉପତ୍ୟକାର ସଂଗ୍ରାମ ବିଷୟରେ ଅନେକ କିଛି ଲେଖାଯାଇଛି । ମାତ୍ର ଅଧିକାଂଶ ଲେଖା ଏକ ବିଶେଷ ତଥା ସ୍ୱତନ୍ତ୍ର ପାଠକ ଗୋଷ୍ଠୀ ପାଇଁ । ଖବର କାଗଜରେ ଛପା ହେଉଥିବା ରିପୋର୍ଟମାନ ଏହି ପ୍ରକଳ୍ପର ଅଲଗା ଅଲଗା ଦିଗ ଉପରେ ଓ ପରସ୍ପରଠାରୁ ବିଚ୍ଛିନ୍ନ । କୌଣସି ଖବରକାଗଜରେ ଏକ ସାମଗ୍ରିକ ରିପୋର୍ଟ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ସବୁ ସରକାରୀ ନଥିପତ୍ର ଗୁପ୍ତ ରଖାଯାଉଛି । ତେଣୁକରି ଏ କଥା କହିଲେ ବୋଧହୁଏ ବିଶେଷ ଭୁଲ ହେବନାହିଁ ଯେ ଏହି ପ୍ରକଳ୍ପ ବିଷୟରେ ଜନସାଧାରଣଙ୍କର ଧାରଣା ଅତି ଅଧୁରା ଓ ଅପାକଳ । ଏହି ଧାରଣା ମୁଖ୍ୟତଃ ଦୁଇ ପ୍ରକାରର -

ଗୋଟିଏ ଧାରଣା ଏହାକୁ ଆଧୁନିକତା ଏବଂ ପରମ୍ପରା ଭିତରେ ଯୁଦ୍ଧ ହିସାବରେ ଦେଖେ । ଆଧୁନିକ, ତର୍କସଙ୍ଗତ, ପ୍ରଗତିଶୀଳ ବିକାଶ ଏବଂ ପାରମ୍ପରିକ, ଅଯୌକ୍ତିକ, ପ୍ରାକ୍-ଶୈଳ୍ପିକ ବିଶ୍ୱଦୃଷ୍ଟିର ଏକ ଯୁଦ୍ଧ । ଆଉ ଗୋଟିଏ ଧାରଣା ଏହାକୁ ଏକ ଗାନ୍ଧୀ ବନାମ ନେହେରୁ ଦ୍ୱନ୍ଦ୍ୱର ରୂପ ଦିଏ । ସମସ୍ୟାଟିକୁ ଏପରି ରୂପ ଦେବା

ଫଳରେ ତାହାକୁ ମିଥ୍ୟା, ପ୍ରବଞ୍ଚନା, ଅଭିସନ୍ଧି ଏବଂ ମିଥ୍ୟାପ୍ରଚାରର ଧୂମାଳ ଭିତରୁ ଉଠାଇ ତାକୁ ଅନୁଚିତ ଭାବରେ ଏକ ନ୍ୟାୟସଙ୍ଗତ ବିବାଦ ଭାବରେ ଦର୍ଶାଯାଉଛି । ଏପରି ଦେଖିବାର ସମସ୍ୟା ହେଲା ଏଇଆ କି ଏହା ବିବାଦକୁ ଏକ ମିଥ୍ୟା ରୂପ ଦେଉଛି । ସତେ ଯେମିତି ବାଦୀ, ପ୍ରତିବାଦୀ ଦୁହେଁ ରାଷ୍ଟ୍ରର ମଙ୍ଗଳ ଚାହୁଁଛନ୍ତି ଆଉ ବିବାଦଟା କେବଳ ତହିଁର ବାଟ ଉପରେ ।

ସମସ୍ୟାକୁ ଦେଖିବାର ଏ ଦୁଇଟାଯାକ ଉପାୟ ଭୁଲ । କାରଣ ଏପରି ଏକ ପୁରୁଣା, ତାତ୍ତ୍ୱିକ ବିବାଦ ଦୃଷ୍ଟିରୁ ଦେଖିଲେ ଏହି ନିର୍ଦ୍ଦିଷ୍ଟ ସମସ୍ୟାର ନିର୍ଦ୍ଦିଷ୍ଟ ତଥ୍ୟ ସବୁ କେଉଁ ପୁରୁଣା ଆବେଗର ଧୂଆଁ ଭିତରେ ଅସ୍ପଷ୍ଟ ହୋଇଯାଏ । ଦୁଇଟି ଯାକ ଚିନ୍ତାଧାରା ଆମକୁ ସଚେତନ କରନ୍ତି କି ଆଗକୁ ବାଟ ଦେଖାଇବା ପାଇଁ ନୂଆ ନାୟକ କେତେ ଜରୁରୀ । ଖାଲି ନୂଆ ନାୟକ ନୁହଁନ୍ତି, ନୂଆ ପ୍ରକାରର ବ୍ୟକ୍ତିତ୍ୱ, ଦିଗଦର୍ଶକ । ଆହୁରି ମଧ୍ୟ ତାହା ଆମକୁ ସଚେତନ କରେ କି ଆମେ ଆମର ବ୍ୟାପକ ଭାବରେ ବ୍ୟବହୃତ ପୁରୁଣା ନାୟକମାନଙ୍କୁ ଲଗାଇ ଏହି ନୂଆ ସମସ୍ୟାର ସମାଧାନ ଖୋଜିପାରିବା ନାହିଁ ।

ଏ ନେହେରୁ ବନାମ ଗାନ୍ଧୀ ଯୁକ୍ତି ଆମର ଏଇ ସମସାମୟିକ ସମସ୍ୟାକୁ ଜୋର ଜବରଦସ୍ତ ଏକ ପୁରୁଣା ଛାଞ୍ଚାରେ ଖାପଖାଇବା ପାଇଁ ବାଧ୍ୟ କରେ । ନେହେରୁ ଓ ଗାନ୍ଧୀ ମୂଳତଃ ଉଦାର ଏବଂ ସତ୍ ଲୋକ ଥିଲେ । ମଣିଷ ପ୍ରକୃତି ଯେ ମୂଳତଃ ସତ୍, ଏହି ସ୍ୱୀକାର୍ଯ୍ୟ ଉପରେ ବିକାଶ ପାଇଁ ତାଙ୍କର କଳ୍ପଲୋକ *(ପାରାଡାଇମ୍)* ପର୍ଯ୍ୟବେସିତ ଥିଲା । ନେହେରୁଙ୍କର କଳ୍ପଲୋକ ଥିଲା ସୋଭିଏତ ଶୈଳୀର ଏକ କେନ୍ଦ୍ରୀଭୂତ ରାଷ୍ଟ୍ର ଯାହା ପିତୃସୁଲଭ ସୁରକ୍ଷା ଯୋଗାଉଥିବ । ଗାନ୍ଧୀଙ୍କର କଳ୍ପଲୋକ ଥିଲା ଗ୍ରାମ୍ୟ ସ୍ୱରାଜ୍ୟକୁ

ଆଧାର କରୁଥିବା ଏକ ମାତୃସୁଲଭ ନୈତିକ ଓ ଯତ୍ନଶୀଳ ବ୍ୟବସ୍ଥା । ଆମେ ଯଦି ସାଧାରଣ ମନୁଷ୍ୟ ମାତ୍ର ନ ହୋଇ ଆଉ ଟିକିଏ ଅଧିକ ମହତ ତଥା ସତ୍ ହୋଇଥାଆନ୍ତୁ ତା' ହେଲେ ଏ ଦୁଇ ବ୍ୟବସ୍ଥାରୁ ଯେ କୌଣସିଟି ମଧ୍ୟ କାମ କରିପାରିଥା'ନ୍ତା । ମାତ୍ର ଆମେମାନେ ଅତି ମାତ୍ରାରେ ସାଧାରଣ । ଗତ ପଚାଶ ବର୍ଷରେ ଆମେ ଖଦୀ ପିନ୍ଧିନାହୁଁ, ନିଜର ପାଶବିକ ପ୍ରବୃତ୍ତିମାନଙ୍କୁ ନିୟନ୍ତ୍ରଣ କରିନାହୁଁ, କାଟି ପିନ୍ଧିନାହୁଁ କିମ୍ବା କୁଟି ଖାଇନାହୁଁ, ଆମଠାରୁ ଅଧିକ ଦୁର୍ଭାଗାମାନଙ୍କୁ ସହାନୁଭୂତି ଦେଖାଇନାହୁଁ । ତେଣୁକରି ଆମେ ଏହି ଦୁଇଟି ଆଦର୍ଶ ବ୍ୟବସ୍ଥା ପାଇଁ ନିଜକୁ ଯୋଗ୍ୟ କରିପାରିନାହୁଁ । ଆଂଶିକ ଭାବରେ ମଧ୍ୟ ନୁହେଁ । ତେଣୁ ଆମକୁ ଆମର ମୌଳିକ, ପାଶବିକ ପ୍ରବୃତ୍ତିମାନଙ୍କଠାରୁ ହିଁ ନିଜକୁ ସୁରକ୍ଷିତ ରଖିବାକୁ ହେବ ।

ଆମେ ସମ୍ଭବତଃ ଆମର ଏ ଶତାବ୍ଦୀର ନାୟକମାନଙ୍କର କୋଟାକୁ ଶେଷ କରିଦେଇଛୁ । ଦେଶ ବର୍ତ୍ତମାନ ପ୍ରାୟ ଅଧିକାଂଶ କ୍ଷେତ୍ରରେ ନାୟକଶୂନ୍ୟ । ମାତ୍ର ଯେ ପର୍ଯ୍ୟନ୍ତ ସେ ନୂଆ ମହାନାୟକମାନେ ଆସିନାହାନ୍ତି, ଆମେ କ'ଣ ଚୁପ୍‌ଚାପ୍ ହାତରେ ହାତ ବାନ୍ଧି ବସିବା ? ନା, ଅବସ୍ଥା ଅସମ୍ଭାଳ ହେବା ଆଗରୁ ଆମକୁ ଛୋଟ ଛୋଟ ଜାଗାରେ କାମ କରୁଥିବା ବର୍ତ୍ତମାନର କୁନି କୁନି ନାୟକଟିମାନଙ୍କୁ ଖୋଜି ବାହାର କରିବାକୁ ପଡ଼ିବ ଏବଂ ତାଙ୍କୁ ସମର୍ଥନ ଓ ଦମ୍ଭ ଦେବାକୁ ହେବ । ସେପରି କୁନି କୁନି ନାୟକ (ଓ ନାୟିକା) ମାନଙ୍କର ସଂଖ୍ୟା ଏ ଦେଶରେ ଅନେକ । ଆମକୁ ବଡ଼ ବଡ଼ ସମସ୍ୟା ଓ ପ୍ରଶ୍ନ ସବୁକୁ ଭୁଲିଯାଇ ଛୋଟ ଓ ନିର୍ଦ୍ଦିଷ୍ଟ ସମସ୍ୟାର ଯୁଦ୍ଧଗୁଡ଼ିକୁ ନିର୍ଦ୍ଦିଷ୍ଟ, ନିର୍ଦ୍ଧାରିତ ଢଙ୍ଗରେ ଲଢ଼ିବାକୁ ପଡ଼ିବ । ବୋଧହୁଏ ଆଗାମୀ ସମୟଟି ଆମପାଇଁ ହେବ ଏକ 'ଛୋଟର ଶତାବ୍ଦୀ' । ବୃହତର ଧ୍ୱଂସ ଏବଂ କ୍ଷୁଦ୍ରର ଆରମ୍ଭ, ବଡ଼ ବୋମା, ବଡ଼ ବନ୍ଧ, ବଡ଼

ଆଦର୍ଶବାଦ, ବଡ଼ ଅନ୍ତର୍ଦ୍ୱନ୍ଦ, ବଡ଼ ଦେଶ, ବଡ଼ ଯୁଦ୍ଧ, ମହାନାୟକ, ବଡ଼ ଭୁଲ୍, ସବୁ କିଛି ବଡ଼ର ଭୁଷୁଡ଼ିବାର ଆରମ୍ଭ ହେବ ବୋଧହୁଏ ଏହି ଶତାବ୍ଦୀରେ । ଏହି ମୁହୂର୍ତ୍ତରେ ହୁଏତ ସ୍ୱର୍ଗରେ କେଉଁ କୁନି ଦେବୀଟିଏ ଆମ ପାଇଁ ନିଜକୁ ପ୍ରସ୍ତୁତ କରୁଛି । ଏହା କ'ଣ ସତ ହେବ? ସତରେ କ'ଣ ଏପରି କିଛି ଘଟିବ? ଏହା ମୋତେ ଅତି ଲୋଭନୀୟ ମନେହେଉଛି !

ମୁଁ ନର୍ମଦାର ଉପତ୍ୟକାକୁ ଟାଣିହୋଇ ଗଲି । କାରଣ ମୋତେ ଲାଗିଲା କି ଉପତ୍ୟକାରେ ଚାଲୁଥିବା ସଂଗ୍ରାମ ଏକ ନୂଆ, ନିର୍ଣ୍ଣାୟକ ଏବଂ କେତେ ଦୃଷ୍ଟିରୁ ଏକ ଦୁଃଖଦାୟକ ଅଧ୍ୟାୟରେ ପହଞ୍ଚିଲାଣି । ମୁଁ ସେଠିକି ଗଲି, କାରଣ ଶାଗୁଣା ମଢ଼ ପାଖକୁ ଟାଣିହୋଇ ଆସିଲା ପରି ଲେଖକମାନେ ଟାଣିହୋଇ ଯାଆନ୍ତି ଗୋଟାଏ ଭଲ କାହାଣୀ ପାଖକୁ । ମୁଁ ଗଲି, କରୁଣା ଦ୍ୱାରା ପ୍ରେରିତ ହୋଇ ନୁହେଁ, ବରଂ କାହାଣୀ ପାଇଁ ନିଛକ ଲୋଭରୁ । ମୋର ନିଷ୍ପତ୍ତି ଠିକ ମଧ୍ୟ ଥିଲା, ଲେଖାହେବା ପାଇଁ ଅପେକ୍ଷା କରିଥିବା ଏକ କାହାଣୀ ମୁଁ ସେଠାରେ ପାଇଗଲି ।

ଆଉ କି କାହାଣୀରେ ସେ ବାବା !





"ଲୋକେ କହୁଛନ୍ତି କି ସର୍ଦ୍ଦାର ସରୋବର ବନ୍ଧ ଗୋଟାଏ ଖର୍ଚ୍ଚବହୁଳ ପ୍ରକଳ୍ପ । କିନ୍ତୁ ଏ ବନ୍ଧ ଲକ୍ଷ ଲକ୍ଷ ଶୋଷିଲାଙ୍କ ତଣ୍ଟିରେ ପାଣି ଦେବ । ଏ ବନ୍ଧ, ଏ କେନାଲ୍ ଆମର ଜୀବନ ରେଖା । କ'ଣ ଆମେ ଏଥିରେ ବି ପଇସାର ହିସାବ କରିବା ? ଆମେ ନିଶ୍ୱାସ ନେଉଥିବା ପବନ ପାଇଁ ଆମେ ପଇସା ଦେଉଛୁ, ପଇସାର ହିସାବ କରୁଛୁ ? ଆମେ ବଞ୍ଚିବୁ ଏବଂ ବଞ୍ଚିବା ପାଇଁ ପାଣି ମଧ୍ୟ ପିଇବୁ । ଆମେ ସମସ୍ତେ ମିଶି ଗୁଜୁରାଟ ପାଇଁ ଗୌରବ ଆଣିଦେବା ।"

(ଗୁଜୁରାଟ ମୁଖ୍ୟମନ୍ତ୍ରୀଙ୍କ ପତ୍ନୀ ଉର୍ମିଳାବେନ୍ ପଟେଲ୍, ୧୯୯୩ରେ ଦିଲ୍ଲୀରେ ଏକ ଜନ ସମାବେଶରେ)

"ବନ୍ଧ ହେଲା ପରେ ଆମେ ଆପଣଙ୍କୁ ଆପଣଙ୍କର ଘରୁ ଚାଲିଯିବା ପାଇଁ ଅନୁରୋଧ କରିବୁ । ଗଲେ ତ ଭଲ । ନହେଲେ ବନ୍ଧରୁ ପାଣି ଛଡ଼ାଯିବ ଆଉ ଆପଣମାନେ ସମସ୍ତେ ବୁଡ଼ିବେ ।"

(ମୋରାରଜୀ ଦେଶାଇ, ୧୯୬୧ ମସିହାରେ ପୋଙ୍ଗ୍ ବନ୍ଧର ବୁଡ଼ି ଅଞ୍ଚଳରେ ଏକ ସଭାରେ)

"ସେମାନେ ଆମକୁ ବିଷ ଟିକେ ଦେଇ ମାରିନଦେଲେ କାହିଁକି ? ତା'ହେଲେ ଆମକୁ ଏଇ ମଳ ଗଦାରେ ରହିବାକୁ ପଡ଼ିନଥା'ନ୍ତା । ସରକାର ଏକୁଟିଆ ତା'ର ବନ୍ଧ ସହିତ ତିଷ୍ଠି ରହିଥା'ନ୍ତା ।"

(ରାମ୍ ବାଈ, ଯାହାଙ୍କ ଘର ନର୍ମଦା ଉପରେ ହୋଇଥିବା ବାର୍ଗି ବନ୍ଧର ବୁଡ଼ି ଅଞ୍ଚଳରେ ଥିଲା । ସେ ବର୍ତ୍ତମାନ ଜବଲପୁରର ଏକ ବସ୍ତିରେ ରହନ୍ତି ।)

ସ୍ୱାଧୀନତାର ପଚାଶ ବର୍ଷ ହେଲାଣି । ନେହେରୁଙ୍କର *'ନଦୀବନ୍ଧଗୁଡ଼ିକ ହେଉଛନ୍ତି ଆଧୁନିକ ଭାରତର ମନ୍ଦିର'* ଭାଷଣ (ନେହେରୁ ନିଜ ଜୀବନକାଳରେ ସେହି ବକ୍ତବ୍ୟ ପାଇଁ ଦୁଃଖିତ ହୋଇଛନ୍ତି) ପରେ ତାଙ୍କର ମତୁଆଲା ପଦାତିକମାନେ ଅହେତୁକ ଓ ଅଦମ୍ୟ ଉତ୍ସାହର ସହିତ ବନ୍ଧ ବାନ୍ଧିବାରେ ଲାଗିପଡ଼ିଲେ । ବନ୍ଧତିଆରି ଆଉ ଦେଶଗଢ଼ିବା ପରସ୍ପରର ପ୍ରତିଶବ୍ଦ ବନିଗଲେ । ବନ୍ଧ ବାନ୍ଧିବାରେ ମାତିଥିବା ଲୋକମାନଙ୍କର ଉତ୍ସାହ ହିଁ କେବଳ ଅନ୍ୟମାନଙ୍କ ମନରେ ସନ୍ଦେହ ଆଣିବା ପାଇଁ ଯଥେଷ୍ଟ ହୋଇଥା'ନ୍ତା । ସେମାନେ ଯେ କେବଳ ନୂଆ ବନ୍ଧ ଓ ଜଳସେଚନ ବ୍ୟବସ୍ଥା ତିଆରି କଲେ ତା ନୁହେଁ । ତା ସହିତ ସେମାନେ ଦେଶର ଚାରିପଟେ ଛାଇ ହୋଇଥିବା କୁନି ପାରମ୍ପରିକ ଜଳସେଚନ ବ୍ୟବସ୍ଥାଗୁଡ଼ିକୁ ମଧ୍ୟ ନିଜ ଅକ୍ତିଆରକୁ ନେଇଗଲେ । ଆଉ ହଜାର ହଜାର ବର୍ଷ ଧରି ଯେଉଁ ବ୍ୟବସ୍ଥା ଲୋକଙ୍କ ଯତ୍ନରେ ବଞ୍ଚି ରହିଥିଲା, ତାକୁ ମାତ୍ର କେତେ ଦଶନ୍ଧିର ଅବହେଳାରେ ଲୋପ କରିଦେଲେ । ସେ ପୁରୁଣା ବ୍ୟବସ୍ଥାର ଚାହିଦା ଭରଣା କରିବା ପାଇଁ ସରକାର ଅଧିକରୁ ଅଧିକ ବନ୍ଧ ତିଆରି କଲେ । ଛୋଟ ବନ୍ଧ, ବଡ଼ ବନ୍ଧ, ଚଉଡ଼ା ବନ୍ଧ, ତେଙ୍ଗା ବନ୍ଧ, ଏମିତି କେତେ କ'ଣ । ଏସବୁର ଫଳ ଏଇଆ ହୋଇଛି ଯେ ଭାରତ ବର୍ତ୍ତମାନ ଦୁନିଆର ତୃତୀୟ ବୃହତ୍ତମ ବନ୍ଧ ନିର୍ମାତା ହେବାର ଗର୍ବ କରୁଛି । କେନ୍ଦ୍ରୀୟ ଜଳ କମିଶନ ଅନୁସାରେ ଭାରତରେ ବର୍ତ୍ତମାନ ୩୬୦୦ଟି ବୃହତ୍ ନଦୀବନ୍ଧ ଅଛି । ତା ମଧ୍ୟରୁ ୩୩୦୦ଟି ସ୍ୱାଧୀନତା ପରେ ହିଁ ତିଆରି । ତଥାପି ଆମର ଜନସଂଖ୍ୟାରେ ପାଞ୍ଚ ଭାଗରୁ ଭାଗେ, ପ୍ରାୟ ୨୦ କୋଟି, ଲୋକଙ୍କ ପାଖରେ ସଫା ପିଇବା ପାଣି ନାହିଁ । ଜନସଂଖ୍ୟାର ତିନିଭାଗରୁ ଦୁଇଭାଗ, ପ୍ରାୟ ୬୦ କୋଟି, ଲୋକଙ୍କ ପାଖରେ ମୌଳିକ ପରିମଳ ବ୍ୟବସ୍ଥା ନାହିଁ ।

ଆରମ୍ଭ ସମୟରେ ବଡ଼ ବନ୍ଧଟିମାନଙ୍କର ଆରମ୍ଭ ସୁନ୍ଦର ଥିଲା, କିନ୍ତୁ ତାଙ୍କର ଶେଷଫଳ ମନ୍ଦ ହିଁ ହୋଇଛି । ଏକ ସମୟରେ ସମସ୍ତେ ବନ୍ଧଗୁଡ଼ିକ ବିଷୟରେ ଖୁସୀ ଥିଲେ – ସାମ୍ୟବାଦୀ, ପୁଞ୍ଜିବାଦୀ, ଖ୍ରୀଷ୍ଟିଆନ୍, ମୁସଲିମ, ହିନ୍ଦୁ, ବୌଦ୍ଧ ସମସ୍ତେ ବଡ଼ ବନ୍ଧମାନଙ୍କୁ ଭଲ ପାଉଥିଲେ । ସେତେବେଳେ ବଡ଼ ବନ୍ଧଟିମାନ ଥିଲେ କବିତାର ପ୍ରେରଣା । କିନ୍ତୁ ଏବେ ଆଉ ନୁହେଁ । ପୃଥିବୀସାରା ବଡ଼ ବନ୍ଧ ସବୁର ବିରୁଦ୍ଧରେ ଆନ୍ଦୋଳନମାନ ମୁଣ୍ଡ ଟେକୁଛି । ପ୍ରଥମ ବିଶ୍ୱର ଧନୀ ଦେଶମାନଙ୍କରେ ବଡ଼ ନଦୀବନ୍ଧମାନଙ୍କୁ ଅକାମୀ କରାଯାଉଛି, ଭାଙ୍ଗି ଉଡ଼ାଇ ଦିଆଯାଉଛି । ବଡ଼ ବନ୍ଧର ଖରାପ ପ୍ରଭାବ ଭଲ ପ୍ରଭାବଠାରୁ ଯେ ଅଧିକ ତାହା ଆଉ କେବଳ ଅନୁମାନର କଥା ନୁହେଁ । ବଡ଼ ବନ୍ଧର ଉପାଦେୟତା ଏବେ ଆଉ ନାହିଁ – ଆଜିକାଲି ତାହା ମରହଜିଆ ବସ୍ତୁ । ବଡ଼ ବନ୍ଧ ତିଆରି କରିବା ଆଉ ସଉକୀର କଥା ନୁହେଁ । ବଡ଼ ବନ୍ଧ ମୌଳିକତଃ ଅଗଣତାନ୍ତ୍ରିକ । ବଡ଼ ବନ୍ଧ ସରକାରୀ କ୍ଷମତାର କେନ୍ଦ୍ରୀକରଣର ଏକ ଉପାୟ । ଏପରି ଏକ ଉପାୟ ଯାହା ବଳରେ ସରକାର ସ୍ଥିର କରିବେ କିଏ କେତେ ପାଣି ପାଇବ, କିଏ କେଉଁଠି କେଉଁ ଫସଲ ବଢ଼ାଇବ । ଜଣେ ଚାଷୀ ପାଖରୁ ତା'ର ପାରମ୍ପରିକ ଜ୍ଞାନକୁ ଛଡ଼ାଇ ନେବାର ଏହା ଏକ ନିଶ୍ଚିତ ଉପାୟ । ଗରିବଙ୍କଠାରୁ ପାଣି, ଜମି ଓ ଜଳସେଚନ ବ୍ୟବସ୍ଥା ଛଡ଼ାଇ ନେଇ ଧନୀଙ୍କୁ ଉପହାର ଦେବା ପାଇଁ ବଡ଼ ନଦୀବନ୍ଧ ହେଉଛି ଏକ ଉଦ୍ଧତ ଉପାୟ । ଜଳଭଣ୍ଡାର ତିଆରିରେ ଅଜସ୍ର ଲୋକ ବିସ୍ଥାପିତ ଏବଂ ସର୍ବସ୍ୱାନ୍ତ ହୁଅନ୍ତି । ପରିବେଶ ଦୃଷ୍ଟିରୁ ବଡ଼ ବନ୍ଧ ବିଶେଷ ବିନାଶକାରୀ । ତାହା ଯୋଗୁ ପାଖର ଭୂମୀ ନଷ୍ଟ ହୋଇଯାଏ । ବଡ଼ ବନ୍ଧ ବନ୍ୟା କରାଏ । ଜମିରେ ପାଣି ଜକେଇ ରହିବାର ଓ ଲୁଣା ମାଡ଼ିବାର କାରଣ ହୁଏ ।

ପାଣି ଜମି ରହିବାରୁ ରୋଗ ମଧ୍ୟ ବ୍ୟାପେ । ଏବେ ଅଧିକରୁ ଅଧିକ ସୂଚନା ମିଳୁଛି ଯେ ବଡ଼ ଜଳଭଣ୍ଡାର ଭୂମିକମ୍ପର ଏକ କାରଣ ମଧ୍ୟ ହୋଇପାରେ ।

ଏପରିକି ଆଧୁନିକ ସଭ୍ୟତାର ପ୍ରତୀକ ହିସାବରେ ବଡ଼ ବନ୍ଧର ଉପଯୋଗିତା ସୀମିତ । ସମସ୍ତେ ଆଶା କରନ୍ତି କି ଏ ପ୍ରକାରର ସ୍ମାରକୀ ବୋଧହୁଏ ଛିଡ଼ା ହୋଇରହିବ ସମୟର ଶେଷ ପର୍ଯ୍ୟନ୍ତ । କିନ୍ତୁ ତା' ବି ହୁଏନି । ବନ୍ଧମାନଙ୍କର ଜୀବନକାଳ ମଧ୍ୟ ସୀମିତ । ପଟୁମାଟିରେ ପୋତି ନହେବା ପର୍ଯ୍ୟନ୍ତ ହିଁ ଗୋଟାଏ ବନ୍ଧ କାମ କରିପାରିବ । ଏଣୁକରି ବଡ଼ ବନ୍ଧଟିମାନ ଯେ କେତେ ମାରାତ୍ମକ ତାହା ବର୍ତ୍ତମାନ ସାଧାରଣ ଜ୍ଞାନର ବିଷୟ । ବନ୍ଧ ପାଇଁ ସ୍ଥାନୀୟ ସ୍ୱାର୍ଥତ୍ୟାଗ ଦ୍ୱାରା ଯେ ଜାତୀୟ ସ୍ୱାର୍ଥ ସାଧିତ ହୁଏ ସେ କଥା ଶୁଣିଲେ ଯେ କୌଣସି ଜାଣିବା ଶୁଣିବା ଲୋକ ହସିବ ନିଶ୍ଚୟ ।

ଏଇସବୁ କାରଣରୁ ପାଶ୍ଚାତ୍ୟର ଧନୀ ଦେଶମାନଙ୍କରେ ବନ୍ଧ ତିଆରି ଶିଳ୍ପ ଆଜି ହରଡ଼ଘଣାରେ ପଡ଼ିଛି । କାରଣ ସେ ଦେଶମାନଙ୍କରେ ଜନ ସଚେତନତା ଯୋଗୁଁ ବନ୍ଧ ତିଆରି ପ୍ରାୟ ବନ୍ଦ ହୋଇଆସିଲାଣି । ତେଣୁ ଆଜି ବିକାଶ ପାଇଁ ସହାୟତା ନାମରେ ଏହାକୁ ଗରିବ ପ୍ରଗତିଶୀଳ ଦେଶମାନଙ୍କୁ ରପ୍ତାନୀ କରାଯାଉଛି । ଯେମିତିକି ଆମେ ସେମାନଙ୍କର ରଦ୍ଦି ଯୁଦ୍ଧାସ୍ତ୍ର ଆଉ ନିଷିଦ୍ଧ ପୋକମରା ଔଷଧକୁ ସାହାଯ୍ୟ ଆକାରରେ ଆମଦାନୀ କରୁଛୁ ।

ଭାରତର ପ୍ରତ୍ୟେକ ସରକାର ଗୋଟିଏ ମୁହଁରେ ଧନୀ ପାଶ୍ଚାତ୍ୟ ଦେଶମାନଙ୍କ ବିରୁଦ୍ଧରେ ଚିଲ୍ଲାଏ । ଆଉ ଆର ମୁହଁରେ ଏପରି ରଦ୍ଦି ବିଷାକ୍ତ ଜିନିଷ କିଣିବା ପାଇଁ ସେହି ଦେଶମାନଙ୍କଠାରୁ ହିଁ ଋଣ କରେ, ଆର୍ଥିକ ସହାୟତା ନିଏ । ଆର୍ଥିକ ସହାୟତା ହେଉଛି ବ୍ୟବସାୟର ଗୋଟିଏ ପୁରୁଣା କୌଶଳ, ଠିକ୍ ଉପନିବେଶବାଦ

ପରି । ଆର୍ଥିକ ସହାୟତାର ଦାଉରେ ଆଫ୍ରିକାର ଅଧିକାଂଶ ଦେଶ ଧ୍ୱଂସ ପାଇଗଲେଣି । ବାଙ୍ଗଲାଦେଶର ଅଣ୍ଟା ଭାଙ୍ଗିବାକୁ ବସିଲାଣି । ଆମକୁ ଏସବୁର ଭୟାବହ ବିଶଦ ବିବରଣୀ ଜଣାଅଛି । ତଥାପି ଆମର ନେତାମାନେ ଓଠରେ ଦୟନୀୟ ହସ ଫୁଟାଇ ଏହାକୁ ସ୍ୱାଗତ କରନ୍ତି । ତା'ପରେ ଅବଶ୍ୟ ନିଜର ଲୁପ୍ତପ୍ରାୟ ଆତ୍ମବଡ଼ିମାକୁ ବଡ଼କରି ଦେଖାଇବା ପାଇଁ ପରମାଣୁ ବୋମା ଫୁଟାନ୍ତି ।

ଗତ ପଚାଶ ବର୍ଷରେ ଭାରତ କେବଳ ଜଳସେଚନ କ୍ଷେତ୍ରରେ ଅଶୀ ହଜାର କୋଟି ଟଙ୍କା ଖର୍ଚ୍ଚ କରିଛି । ମାତ୍ର ଏଇ ପଚାଶ ବର୍ଷ ଭିତରେ ମରୁଡ଼ି ତଥା ବନ୍ୟା ପ୍ରପୀଡ଼ିତ ଅଞ୍ଚଳର ପରିମାଣ ବଢ଼ିଛି ମାତ୍ର କମିନାହିଁ । ଜଳସେଚନ କ୍ଷେତ୍ରରେ ବିପର୍ଯ୍ୟୟ ତଥା ବନ୍ଧମାନଙ୍କ ଯୋଗୁ ଘଟୁଥିବା ବନ୍ୟା ବିଷୟରେ ଅନେକ ଉଦ୍‌ବେଗଜନକ ସୂଚନା ମିଳୁଛି । ଉତ୍ପାଦନ ହ୍ରାସ ଓ ଜମିର ଅବକ୍ଷୟ ଯୋଗୁ 'ସବୁଜ ବିପ୍ଳବ' ପ୍ରତି ଲୋକଙ୍କର ମୋହଭଙ୍ଗ ହୋଇଛି । ତଥାପି ସରକାର ୩୬୦୦ ବନ୍ଧ ଭିତରୁ ଗୋଟିକର ବି ସମୀକ୍ଷା କରିବା ପାଇଁ ଚେଷ୍ଟା କରି ନାହାନ୍ତି । ସରକାର ବୁଝିବା ପାଇଁ ଚେଷ୍ଟା କରି ନାହାନ୍ତି ଯେଉଁ ଲକ୍ଷରେ ନଦୀବନ୍ଧଟି କରାଯାଇଥିଲା ତାହା କେତେ ଦୂର ସାଧିତ ହୋଇଛି । ଦେଖିବାକୁ ଚେଷ୍ଟା କରି ନାହାନ୍ତି ଯେଉଁ ଅଜସ୍ର ଅର୍ଥ ସେ ନଦୀବନ୍ଧ ଯୋଜନାରେ ଖର୍ଚ୍ଚ ହୋଇଥିଲା ତାହା କେତେ ଦୂର ଯଥାର୍ଥ ଥିଲା । ଏପରିକି ପ୍ରକୃତରେ କେତେ ଖର୍ଚ୍ଚ ହୋଇଛି ତା'ର ସଠିକ ହିସାବ ମଧ୍ୟ ସରକାର ନିର୍ଣ୍ଣୟ କରବାକୁ ଚେଷ୍ଟା କରି ନାହାନ୍ତି ।

ଏବେ ପ୍ରତି ବର୍ଷ କେତେ ଖାଦ୍ୟଶସ୍ୟ ଓ ଖାଇବା ତେଲ ଉତ୍ପାଦନ ହେଉଛି ଏବଂ ୧୯୪୭ରେ ତାହା କେତେ ଥିଲା ତା'ର ହିସାବ ଭାରତ ସରକାରଙ୍କ ପାଖରେ ରହିଛି । ଏ ହିସାବ ମଧ୍ୟ ଅଛି ଯେ ବର୍ଷକୁ କେତେ ପରିମାଣର ବକ୍‌ସାଇଟ ଉତ୍ତୋଳିତ ହୁଏ କିମ୍ବା

ଜାତୀୟ ରାଜପଥମାନଙ୍କର ମୋଟ ଆୟତନ କେତେ । ଏପରିକି ଜଣେ ଚାହିଁଲେ ଷ୍ଟକ୍ ଏକ୍‌ସ୍‌ଚେଞ୍ଜରେ ଅଂଶଧନର ଅବସ୍ଥାର କିମ୍ବା ମୁଦ୍ରା ବଜାରରେ ଟଙ୍କାର ଆନ୍ତର୍ଜାତିକ ମୂଲ୍ୟର ବଦଳୁଥିବା ହାରର ମିନିଟ ମିନିଟ କରି ହିସାବ ରଖିପାରିବ । ଜଣେ ଏ କଥା ସୁବିଧାରେ କହିଦେଇ ପାରିବ ଯେ ଆମେ ସାର୍‌ଜାରେ ଶୁକ୍ରବାର ଦିନ ପାକିସ୍ଥାନ ବିରୁଦ୍ଧରେ କେତେଟି କ୍ରିକେଟ ମ୍ୟାଚ୍ ହାରିଛୁ । ଏ କଥା ମଧ୍ୟ ଖୋଜି ବାହାର କରିବା ଆଦୌ କଷ୍ଟ ନୁହେଁ ଯେ ଭାରତରେ ଗଲାବର୍ଷ କେତେ ଗ୍ରାଜୁଏଟ୍ ବାହାରିଥିଲେ । କିମ୍ବା କେତେ ଜଣେ ଲୋକ ଗର୍ଭନିରୋଧକ ଅସ୍ତ୍ରୋପଚାର କରାଇଥିଲେ । କନ୍ତୁ ବଡ଼ ବନ୍ଧ ଏବଂ ଅନ୍ୟ ବଡ଼ ପ୍ରକଳ୍ପରେ ଆଜି ପର୍ଯ୍ୟନ୍ତ କେତେ ଜଣ ଲୋକ ବିସ୍ଥାପିତ ହୋଇଛନ୍ତି ସେ ହିସାବ ସରକାରଙ୍କ ପାଖରେ ନାହିଁ । 'ଜାତୀୟ ପ୍ରଗତି' ପାଇଁ କେତେ ଜଣ ଲୋକ ବଳି ପଡ଼ିଛନ୍ତି ସେ ହିସାବ ସରକାରଙ୍କ ପାଖରେ ନାହିଁ । ଏ ମାମଲା ଆଶ୍ଚର୍ଯ୍ୟଜନକ ନୁହେଁ କି ? ପ୍ରକୃତରେ କେତେ ଖର୍ଚ୍ଚ ହୋଇଛି ଏବଂ ସେ ଖର୍ଚ୍ଚର ବୋଝ କାହା ଉପରେ କେତେ ପଡ଼ିଛି ତାହା ନଜାଣିଲେ ଆମେ ପ୍ରଗତିର ମୂଲ୍ୟର ହିସାବ କରିବା କେମିତି?

ଇଣ୍ଡିଆନ୍ ଇନ୍‌ଷ୍ଟିଟୁଟ୍ ଅଫ୍ ପବ୍ଲିକ୍ ଆଡ୍‌ମିନିଷ୍ଟ୍ରେସନ୍ ଥରେ ଚଉବନଟି ବୃହତ ନଦୀବନ୍ଧର ଏକ ସର୍ବେକ୍ଷଣ କରିଥିଲା । ସେଥିରୁ ଜଣାପଡ଼ିଲା କି ଗୋଟାଏ ବନ୍ଧ ଦ୍ୱାରା ହାରାହାରି ୪୪,୧୮୨ ଲୋକ ବିସ୍ଥାପିତ ହୋଇଛନ୍ତି । ୩୩୦୦ଟି ବଡ଼ ବନ୍ଧରୁ ୫୪ଟି ବନ୍ଧ ଗୋଟିଏ ବଡ଼ ନମୁନା ନୁହେଁ ନିଶ୍ଚୟ । ହେଲେ ଭାତ ହାଣ୍ଡିରୁ ଗୋଟିଏ ଟିପିକରି କିଛି ତ ଦେଖିହେବ । ତେଣୁ ଆସନ୍ତୁ କିଛି ହିସାବ କରିବା । ଧରନ୍ତୁ ବନ୍ଧ ପିଛା ୪୪,୧୮୨ ଲୋକ ବିସ୍ଥାପିତ ନହୋଇ ହାରାହାରି ମାତ୍ର ୧୦,୦୦୦ ଲୋକ ବିସ୍ଥାପିତ ହୋଇଛନ୍ତି । ଏହି ସଂଖ୍ୟାଟି

ଅବିଶ୍ୱସନୀୟ ଭାବରେ ଛୋଟ । ତଥାପି ସେହି ହାରରେ ହିସାବ କଲେ ୩୩୦୦ଟି ବନ୍ଧରେ ବିସ୍ଥାପିତ ଲୋକଙ୍କ ସଂଖ୍ୟା ହେବ ୩,୩୦,୦୦,୦୦୦ - ୩୩୦ ଲକ୍ଷ ବା ୩·୩ କୋଟି । ଅର୍ଥାତ ଗତ ପଚାଶ ବର୍ଷରେ କେବଳ ବଡ଼ ବନ୍ଧ ଦ୍ୱାରା ଅତି କମ୍‌ରେ ୩·୩ କୋଟି ଲୋକ ବିସ୍ଥାପିତ ହୋଇଛନ୍ତି । ଆଉ ଅନ୍ୟ ବଡ଼ ବଡ଼ ବିକାଶମୂଳକ ପ୍ରକଳ୍ପଗୁଡ଼ିକର କଥା ଛାଡ଼ନ୍ତୁ । ଯୋଜନା କମିଶନର ସଚିବ ଏନ୍. ସି. ସାକ୍‌ସେନାଙ୍କ ବ୍ୟକ୍ତିଗତ ମତରେ ମୋଟ ବିସ୍ଥାପିତଙ୍କ ସଂଖ୍ୟା ପ୍ରାୟ ୫୦୦ ଲକ୍ଷ (ଏଥିରୁ ବନ୍ଧ ବିସ୍ଥାପିତଙ୍କ ସଂଖ୍ୟା ହେଉଛି ୪୦୦ ଲକ୍ଷ) । କିନ୍ତୁ ଏ ମତ ବ୍ୟକ୍ତିଗତ । ସରକାରଙ୍କ ପାଖରେ ଏ ବିଷୟରେ ସୂଚନା ନାହିଁ କିମ୍ବା ସରକାରୀ ଭାବରେ ଏପରି ପରିସଂଖ୍ୟାନ ଦେବାର ସାହାସ କାହାର ନାହିଁ । ପାଞ୍ଚ କୋଟି ବିସ୍ଥାପିତଙ୍କ ସଂଖ୍ୟା କଥା ବିଶ୍ୱାସ କରିବା ତ ପ୍ରାୟ ଅସମ୍ଭବ ।

ପାଞ୍ଚ କୋଟି ଲୋକ! ସରକାର ହୁଏତ ଗୁଁ ପୁଁ ହୋଇ କିଛି କହିବେ । ଦୁର୍ବଳ ସ୍ୱରରେ ହୁଏତ କହିବେ ସଂଖ୍ୟାଟା ବେଶୀ ମନେ ହେଉଛି । କିନ୍ତୁ ସତ ସଂଖ୍ୟାଟି ତେବେ କେତେ ? କେତେ ବା କମ୍ ହେବ ଏଥିରୁ! ସରକାର! କିଛିତ କୁହନ୍ତୁ!

ମତେ ଲାଗୁଛି ସତେ ଯେପରି ମୁଁ କୁଢ଼ କୁଢ଼ କଙ୍କାଳଭରା ଗୋଟିଏ ବିରାଟ ଗଣକବରକୁ ହାବୁଡ଼ିଗଲି ।

ପାଞ୍ଚକୋଟି ହେଉଛି ଗୁଜୁରାଟର ମୋଟ ଜନସଂଖ୍ୟାଠାରୁ ଅଧିକ । ଅଷ୍ଟ୍ରେଲିଆର ଜନସଂଖ୍ୟାର ପ୍ରାୟ ତିନି ଗୁଣ । ଭାରତ ବିଭାଜନ ବେଳେ ଶରଣାର୍ଥୀ ପାଲଟିଥିବା ଲୋକସଂଖ୍ୟାର ତିନି ଗୁଣରୁ ମଧ୍ୟ ଅଧିକ । ପାଲେଷ୍ଟାଇନ୍ ଶରଣାର୍ଥୀଙ୍କ ସଂଖ୍ୟାର ଦଶ ଗୁଣ । ଏବେ କୋସୋଭୋରୁ ଦଶ ଲକ୍ଷ ଶରଣାର୍ଥୀ ବିସ୍ଥାପିତ ହୋଇଛନ୍ତି ବୋଲି ପୁରା ପାଶ୍ଚାତ୍ୟ ଜଗତ ଉଠୁଛି ପଡୁଛି ।

ବିସ୍ଥାପିତ ଲୋକଙ୍କ ମଧ୍ୟରୁ ଏକ ବିରାଟ ଭାଗ ହେଉଛନ୍ତି ଆଦିବାସୀ । ସର୍ଦାର ସରୋବର ବନ୍ଧରେ ବିସ୍ଥାପିତ ହେଉଥିବା ଲୋକଙ୍କ ଭିତରୁ ଶତକଡ଼ା ପ୍ରାୟ ୫୭·୬ ହେଉଛନ୍ତି ଆଦିବାସୀ । ଦଳିତଙ୍କ ସଂଖ୍ୟା ଏଥିରେ ମିଶାଇ ଦିଅନ୍ତୁ, ଆଉ ସେ ସଂଖ୍ୟା ଆମର ସମାଜ ବ୍ୟବସ୍ଥା ବିଷୟରେ ଅନେକ ଅରଚିକର କଥା କହିବ । ଅନୁସୂଚିତ ଜାତି ଓ ଜନଜାତି କମିଶନରଙ୍କ ଅନୁସାରେ ବିସ୍ଥାପିତଙ୍କ ମଧ୍ୟରେ ଅତି କମ୍‌ରେ ୬୦ ପ୍ରତିଶତ ଲୋକ ଆଦିବାସୀ ଓ ହରିଜନ । ଭାରତର ମୋଟ ଜନସଂଖ୍ୟାରେ ଆଦିବାସୀଙ୍କ ଅନୁପାତ ଶତକଡ଼ା ପ୍ରାୟ ଆଠ ଏବଂ ହରିଜନଙ୍କର ଅନୁପାତ ପ୍ରାୟ ପନ୍ଦର ପ୍ରତିଶତ । ଏହି ଦୃଷ୍ଟିରୁ ଦେଖିଲେ ବିସ୍ଥାପନର ଗୋଟିଏ ଅଲଗା ଦିଗ ଖୋଲିଯାଏ । ପ୍ରଭାବିତ ଲୋକମାନେ ଭିନ୍ନ ଜନଗୋଷ୍ଠୀର ହୋଇଥିବାରୁ ଦେଶ ନିର୍ମାତାଙ୍କ ଉପରୁ ଚାପ କିଛି ମାତ୍ରାରେ କମିଯାଏ । ସତେ ଯେପରି ଏହା ଏକ ଖୋଲା ଖର୍ଚ୍ଚ ବ୍ୟବସ୍ଥା – ଜଣେ ଖର୍ଚ୍ଚ କରିବ, କିନ୍ତୁ ତାକୁ ଭରଣା କରିବାର ଦାୟିତ୍ୱ ଆଉ କାହା ଉପରେ ପଡ଼ିବ । ଆଉ କେଉଁ ଦେଶର ବା ଦୁନିଆର ଲୋକମାନେ ସେ ବୋଝ ଉଠାଇବେ । ଭାରତରେ ଧନୀକ ଗୋଷ୍ଠୀଙ୍କର ଜୀବନଶୈଳୀ ପାଇଁ ତ୍ୟାଗ କରିବାକୁ ପଡୁଛି ଦୀନହୀନ ଗରିବ ଲୋକମାନଙ୍କୁ ।

ଆଉ ସବୁବେଳେ କୁହା ଚାଲିଥାଏ ଯେ ଭାରତ ହେଉଛି ବିଶ୍ୱର ବୃହତ୍ତମ ଗଣତନ୍ତ୍ର ।

ସେହି କୋଟି କୋଟି ବିସ୍ଥାପିତ ଲୋକଙ୍କର ହେଲା କ'ଣ? ସେମାନେ ଏବେ କେଉଁଠି? ଜୀବିକା ପାଇଁ କ'ଣ କରୁଛନ୍ତି ସେମାନେ? ସତରେ, ଏସବୁ କଥା କେହି ବି ଜାଣେନା । (ଗତ ମାସରେ ଖବର କାଗଜମାନଙ୍କରେ ରିପୋର୍ଟ ବାହାରିଥିଲା ଯେ

ନାଗାର୍ଜୁନ ସାଗର ବନ୍ଧ ଦ୍ୱାରା ବିସ୍ଥାପିତ ଆଦିବାସୀ ଲୋକମାନେ ତାଙ୍କ ପିଲାମାନଙ୍କୁ ବିଦେଶୀ ପୋଷ୍ୟ ସନ୍ତାନ ସଂସ୍ଥାମାନଙ୍କୁ ବିକ୍ରି କରୁଛନ୍ତି । ରିପୋର୍ଟ ବାହାରିଲା ପରେ ସରକାର ହସ୍ତକ୍ଷେପ କଲେ, ଆଉ ପିଲାମାନଙ୍କୁ ଆଣି ଏକ ସରକାରୀ ଡାକ୍ତରଖାନାରେ ରଖିଲେ । ସେଠାରେ କେବଳ ଅବହେଳାରୁ ଛଅ ଜଣ ପିଲା ମରିଗଲେ ।) ପୁର୍ନବାସ ବିଷୟରେ ସରକାରୀ ଇଛା ଶକ୍ତି ଏବଂ ନୀତି ଅତ୍ୟନ୍ତ ସ୍ପଷ୍ଟ । ଏଦିଗରେ ସରକାରଙ୍କର କିଛି ନୀତି ହିଁ ନାହିଁ । ଏ ପଚାଶ ବର୍ଷ ଭିତରେ ସରକାର ୫ କୋଟି ଲୋକଙ୍କୁ ବିସ୍ଥାପିତ କରିସାରିଥିଲେ ମଧ୍ୟ ଏକ ଜାତୀୟ ପୁର୍ନବାସ ନୀତି ନିର୍ଦ୍ଧାରଣ କରିବା ଜରୁରୀ ମନେ କରିନାହାନ୍ତି । ଜମି ଅଧିଗ୍ରହଣ ଆଇନ, ୧୮୯୪ (୧୯୮୪ରେ ସଂଶୋଧିତ), ଅନୁସାରେ ସରକାର ବିସ୍ଥାପିତ ଲୋକଙ୍କୁ କେବଳ ଆର୍ଥିକ କ୍ଷତିପୂରଣ ଦେବା ଛଡ଼ା ଅନ୍ୟ କିଛି କରିବା ପାଇଁ ଆଇନଗତ ଭାବରେ ବାଧ୍ୟ ନୁହନ୍ତି । କଳ୍ପନା କରନ୍ତୁ ଯେ ଜଣେ ନିରକ୍ଷର ଆଦିବାସୀ ପୁରୁଷକୁ (ସ୍ତ୍ରୀ ମାନଙ୍କୁ କିଛି ମିଳେନି) ଅମଲାତନ୍ତ୍ର ନଗଦ ଟଙ୍କାରେ କ୍ଷତିପୂରଣ ଦେବା ବ୍ୟବସ୍ଥାର ବିଡ଼ମ୍ବନା, ଯେଉଁଠି ଡାକବାଲା ବି ଚିଠି ଦେବା ପାଇଁ ପାଉଣା ମାଗେ । ଅଧିକାଂଶ ଆଦିବାସୀଙ୍କର ତ ବିଧିବଦ୍ଧ ଜମିଜମା ପଟ୍ଟା ନଥାଏ, ତେଣୁ ସେମାନେ ତ କ୍ଷତିପୂରଣ ପାଇଁ ଦାବି ବି କରି ପାରନ୍ତି ନାହିଁ । ଆଉ ଅଧିକାଂଶ ଆଦିବାସୀ ବା ଛୋଟ ଚାଷୀଙ୍କ ପାଇଁ ନଗଦ ଟଙ୍କା ସେତିକି ଉପଯୋଗୀ, ସୁପ୍ରିମକୋର୍ଟର ଜଣେ ବିଚାରପତିଙ୍କ ପାଇଁ ବସ୍ତାଏ ସାର ଯେତିକି ଉପଯୋଗୀ ।

ଭାରତରେ କୋଟି କୋଟି ବିସ୍ଥାପିତ ଲୋକଙ୍କର କୌଣସି ଅବସ୍ଥିତି ହିଁ ନାହିଁ । ନା ଇତିହାସରେ, ନା ଭୂଗୋଳରେ, ନା ସରକାରୀ ପରିସଂଖ୍ୟାନରେ । କେତେ ଜଣକୁ ତ ତିନି ଚାରି ଥର

ଭିଟାମାଟି ଛାଡ଼ିବାକୁ ପଡ଼ିଛି – ପ୍ରଥମେ ବନ୍ଧ ପାଇଁ, ତା'ପରେ କମାଣ ଘାଟୀ ପାଇଁ, ପୁଣି ଆଉ ଗୋଟିଏ ବନ୍ଧ, ତା'ପରେ ୟୁରାନିୟମ୍ ଖଣି, ବିଜୁଳି ପ୍ରକଳ୍ପ । ଥରେ ଚକ ଗଡ଼ିବା ଆରମ୍ଭ କଲେ ତା'ର ଆଉ ବିରାମ ନଥାଏ । ବିସ୍ଥାପିତମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଶେଷ ଶରଣ ହେଲା ବଡ଼ ବଡ଼ ସହରତଳିର ପଚରା ବସ୍ତି । ଆଉ ଅଧିକାଂଶଙ୍କର କାମ ହେଲା ନିର୍ମାଣ କାମରେ କି ଇଟାଭାଟିରେ ଶସ୍ତା ଶ୍ରମିକ ବନିବା । ଏପରି ନିର୍ମାଣ ପ୍ରକଳ୍ପରେ ଶ୍ରମିକ ବନିବା ଯାହା ପୁଣି ଅନ୍ୟମାନଙ୍କୁ ବିସ୍ଥାପିତ କରେ । ଅବଶ୍ୟ ଏକଥା ସତ ଯେ ତାଙ୍କୁ କେହି ବିଷାକ୍ତ ବାଷ୍ପ ଦେଇ ବା ଅନ୍ୟ ବାଟରେ ମାରି ନିଶ୍ଚିହ୍ନ କରିଦେଉ ନାହିଁ । କିନ୍ତୁ ସେମାନେ ବର୍ତ୍ତମାନ ବସ୍ତିମାନଙ୍କରେ ଯେପରି ଅବସ୍ଥାରେ ରହୁଛନ୍ତି, ତାହା ନାଜୀ ସରକାରଙ୍କର ମଣିଷ ଖୁଆଡ଼ରେ ରହିବା ବ୍ୟବସ୍ଥା ଠାରୁ ବି ଖରାପ । ଏ କଥା ସତ ସେମାନେ ବନ୍ଦୀ ନୁହନ୍ତି, କିନ୍ତୁ ତାଙ୍କର ଅବସ୍ଥା ଦୃଷ୍ଟିରୁ ସ୍ୱାଧୀନତା ପାଇଁ ନୂଆ ବ୍ୟାଖ୍ୟା ଖୋଜିବାକୁ ପଡ଼ିବ ।

କିନ୍ତୁ ଏତେ ଥର ବିସ୍ଥାପିତ ହୋଇସାରିଲା ପରେ ମଧ୍ୟ ତାଙ୍କର ନାରକୀୟ ଦୁଃସ୍ୱପ୍ନର ଅନ୍ତ ହୁଏ ନାହିଁ । ନିର୍ବାଚନ ସମୟ ଦୂରରେ ଥିବା ବେଳେ, ସହରୀ ଧନୀକ ଗୋଷ୍ଠୀଙ୍କ ପରିଛନ୍ନତା ଚିନ୍ତାକୁ ସମ୍ମାନ ଦେଖାଇ ମଝିରେ ମଝିରେ ସରକାର ବୁଲ୍‌ଡୋଜର ଲଗାଇ ତାଙ୍କର ସେହି ଦୟନୀୟ ବସ୍ତିଗୁଡ଼ିକୁ ଭାଙ୍ଗି ତାଙ୍କୁ ପୁଣି ବାସହରା କରନ୍ତି । ଦିଲ୍ଲୀ ଭଳି ମହାନଗରୀରେ ରାସ୍ତା କଡ଼ରେ ମଳତ୍ୟାଗ କଲେ ତାଙ୍କୁ ପୋଲିସର ଗୁଳି ମାଡ଼ ମଧ୍ୟ ଖାଇବାକୁ ପଡ଼ିପାରେ – ଦୁଇ ବର୍ଷରୁ କମ୍ ସମୟ ତଳେ ତିନି ଜଣ ବସ୍ତିବାସିନ୍ଦାଙ୍କୁ ଏହି ଦଶା ଭୋଗିବାକୁ ପଡ଼ିଥିଲା ।

୧୭୭୦ ଦଶକର ଫ୍ରେଞ୍ଚ୍ କାନାଡୀୟ ଯୁଦ୍ଧରେ ଲର୍ଡ ଆମହର୍ଷ୍ଟ

## ନଦୀବନ୍ଧ ଓ ଆଦିବାସୀ ଲୋକଙ୍କ ବିସ୍ଥାପନ

| *ପ୍ରକଳ୍ପ (#) ଓ ରାଜ୍ୟ* | *ବିସ୍ଥାପିତ ହେବାକୁ ଥିବା ସଂଖ୍ୟା* | |
|---|---|---|
| | *ମୋଟ ସଂଖ୍ୟା* | *%ଆଦିବାସୀ* |
| କର୍ଜନ (ଗୁଜୁରାଟ) | ୧୧,୬୦୦ | ୧୦୦ |
| ସର୍ଦ୍ଦାର ସରୋବର (ଗୁଜୁରାଟ) | ୨୦୦,୦୦୦ | ୫୭.୬ |
| ମହେଶ୍ୱର (ମଧ୍ୟ ପ୍ରଦେଶ) | ୨୦,୦୦୦ | ୬୦ |
| ବୋଧଘାଟ (ମଧ୍ୟ ପ୍ରଦେଶ) | ୧୨,୭୦୦ | ୭୩.୯୧ |
| ଇଚା (ବିହାର) | ୩୦,୮୦୦ | ୮୦ |
| ଚାଣ୍ଡିଲ (ବିହାର) | ୩୭,୬୦୦ | ୮୭.୯୨ |
| କୋଏଲ କାରୋ (ବିହାର) | ୬୬,୦୦୦ | ୮୮ |
| ମହି ବଜାଜ ସାଗର (ରାଜସ୍ଥାନ) | ୩୮,୪୦୦ | ୭୬.୨୮ |
| ପୋଲାଭରମ୍ (ଆନ୍ଧ୍ର ପ୍ରଦେଶ) | ୧୫୦,୦୦୦ | ୫୨.୯୦ |
| ମାଇଥନ୍ ଓ ପାଞ୍ଚେଟ (ବିହାର) | ୯୩,୮୭୪ | ୫୬.୪୬ |
| ଅପର ଇନ୍ଦ୍ରାବତୀ (ଓଡ଼ିଶା) | ୧୮,୫୦୦ | ୮୯.୨୦ |
| ପୋଙ୍ଗ (ହିମାଚଳ ପ୍ରଦେଶ) | ୮୦,୦୦୦ | ୫୬.୨୫ |
| ଇଞ୍ଚମ୍ପଲ୍ଲୀ (ଆନ୍ଧ୍ର-ମହାରାଷ୍ଟ୍ର) | ୩୮,୧୦୦ | ୭୬.୨୮ |
| ଟୁଲ୍‌ଟୁଲି (ମହାରାଷ୍ଟ୍ର) | ୧୩,୬୦୦ | ୫୧.୬୧ |
| ଦାମନ୍ ଗଙ୍ଗା (ଗୁଜୁରାଟ) | ୮,୭୦୦ | ୪୮.୭୦ |
| ଭାକ୍ରା (ହିମାଚଳ ପ୍ରଦେଶ) | ୩୬,୦୦୦ | ୩୪.୭୬ |
| ମାସାନ୍ ଜଳଭଣ୍ଡାର (ବିହାର) | ୩,୭୦୦ | ୩୧.୦୦ |
| ଉକାଇ ଝଳଭଣ୍ଡାର (ଗୁଜୁରାଟ) | ୫୨,୦୦୦ | ୧୮.୯୨ |

\#    ପ୍ରକଳ୍ପଗୁଡ଼ିକ ନିର୍ମାଣାଧୀନ କିମ୍ବା ପ୍ରସ୍ତାବିତ

ଉତ୍ସ:    ସତ୍ୟଜିତ ସିଂହ, ଟେମିଙ୍ଗ ଅଫ୍ ଦି ୱାଟରସ୍, ଓୟୁପି, ୧୯୯୭
ଏବଂ ବିଭିନ୍ନ ସରକାରୀ ପରିସଂଖ୍ୟାନ ।

ବସନ୍ତ ରୋଗର ଭୂତାଣୁ ଥିବା କମ୍ବଳ ବାଣ୍ଟିକରି ସେଠିକାର ଲୋହିତ ଭାରତୀୟମାନଙ୍କର ବଂଶ ନିପାତ କରିଥିଲେ । ଦୁଇ ଶତାବ୍ଦୀ ପରେ ଆମେ ଅସଲ ଭାରତୀୟମାନେ ସେହି ଏକାଭଳି ଫଳ ପାଇବା ପାଇଁ ସହଜରେ ଧରାପଡୁନଥିବା ଉପାୟ ବାହାର କରିଛେ ।

ଭାରତର କୋଟି କୋଟି ବିସ୍ଥାପିତ ଲୋକ ଗୋଟିଏ ଅଘୋଷିତ ଯୁଦ୍ଧର ଶରଣାର୍ଥୀ ମାତ୍ର । ଆମେ ଆମେରିକାର ଗୋରାମାନଙ୍କ ପରି, ଫରାସୀ କାନାଡୀୟ ପରି ବା ହିଟ୍‌ଲର ସମୟର ଜର୍ମାନମାନଙ୍କ ପରି ଚୁପ୍ ରହି ଏ ଅପରାଧକୁ ସମର୍ଥନ ଜଣାଉଛୁ । କିନ୍ତୁ ଆମେ ଏପରି କରୁଛୁ କାହିଁକି? କାହିଁକି ନା ଆମକୁ କୁହାଯାଇଛି ଯେ ଏସବୁ କରାଯାଉଛି ବୃହତ୍ତର ସାମୂହିକ ସ୍ୱାର୍ଥ ପାଇଁ, ଜାତୀୟ ପ୍ରଗତି ପାଇଁ । ଏବଂ ଜାତୀୟ ସ୍ୱାର୍ଥ ହିଁ ସର୍ବୋପରି । ତେଣୁ ଆମେମାନେ ଖୁସିରେ, ବିନା ପ୍ରଶ୍ନରେ, ଏପରିକି କୃତଜ୍ଞତାର ସହିତ ଆମକୁ କୁହା ଯାଉଥିବା କଥା ସବୁକୁ ବିଶ୍ୱାସ କରିଯାଉଛେ । ଆମେ ବିଶ୍ୱାସ କରିଯାଉଛେ ଯେ ଏସବୁକୁ ବିଶ୍ୱାସ କରିବା ଦ୍ୱାରା ଆମର ଲାଭ ହିଁ ହେବ ।

ମୋତେ ଅନୁମତି ଦିଅନ୍ତୁ ଆପଣଙ୍କର ବିଶ୍ୱାସ ଭାଙ୍ଗିବା ପାଇଁ । ମୋ ହାତ ଧରନ୍ତୁ, ଏହି ଗୋଲକଧନ୍ଦା ଭିତରେ ମୁଁ ଆପଣଙ୍କୁ ବାଟ କଢ଼ାଇନେବି । ଏହା କରିବାକୁ ହେବ, କାରଣ ଆପଣଙ୍କର ବୁଝିବା ଅତି ଜରୁରୀ । ଯଦି ଏକମତ ନହେବା ପାଇଁ ଆପଣଙ୍କର କାରଣ ରହିଛି, ତେବେ ନିଶ୍ଚିତ ରୂପେ ବିପକ୍ଷ ଦଳରେ ମିଶନ୍ତୁ । କିନ୍ତୁ ଦୟାକରି କଥାଟିକୁ ଏଡ଼ାଇ ଯାଆନ୍ତୁ ନାହିଁ, ନିର୍ଲିପ୍ତ ରୁହନ୍ତୁ ନାହିଁ ।

ଏ କାହାଣୀ କହିବା ସହଜ ବ୍ୟାପାର ନୁହେଁ । କାରଣ ଏଥିରେ ସଂଖ୍ୟା ଆଉ ବର୍ଣ୍ଣନା ଭରା । ଆଗରୁ ସଂଖ୍ୟା ଦେଖିଲେ ମୋ ଆଖି ଝଲସି ଯାଉଥିଲା । ହେଲେ ଆଉ ନୁହେଁ । ଯେବେଠୁ ମୁଁ ସେ ସଂଖ୍ୟା କହୁଥିବା କାହାଣୀ ଶୁଣିବା ଆରମ୍ଭ କଲି ଯେବେଠୁ ତ ଆଦୌ

ନୁହେଁ । ବିଶ୍ୱାସ କରନ୍ତୁ, ଏଠାରେ ଗୋଟିଏ ବଡ଼ କାହାଣୀ ରହିଛି ।

ଭାରତ ଆଗକୁ ବଢ଼ିଛି, ସେ କଥା ସତ । ଏ କଥା ବି ସତ ଯେ ୧୯୪୭ରେ ଭାରତରେ ଉପନିବେଶବାଦର ଅନ୍ତ ଘଟିଛି । ସେ ସମୟରେ ଭାରତ ଥିଲା ଖାଦ୍ୟ ଦୃଷ୍ଟିରୁ ଏକ ଅଭାବୀ ରାଷ୍ଟ୍ର । ୧୯୫୦ ମସିହାରେ ଭାରତରେ ଉତ୍ପାଦିତ ହୋଇଥିଲା ୫୧୦ ଲକ୍ଷ ଟନ୍ ଖାଦ୍ୟଶସ୍ୟ । ଏବେ ଆମେ ପ୍ରାୟ ୨୦୦୦ ଲକ୍ଷ ଟନ୍ ଖାଦ୍ୟ ଉତ୍ପାଦନ କରୁଛୁ । ଏ କଥା ବି ସତ ଯେ ୧୯୯୫ରେ ସରକାରୀ ଶସ୍ୟଭଣ୍ଡାର ୩୦୦ ଲକ୍ଷ ଟନ୍ ବଳକା ଖାଦ୍ୟଶସ୍ୟ ରଖି ଉଚ୍ଛୁଳି ପଡୁଥିଲା । ହେଲେ ଏ କଥା ତା'ଠାରୁ ବି ବଳି ବଡ଼ ସତ ଯେ ସେ ବର୍ଷ ଭାରତର ଜନସଂଖ୍ୟାର ଶତକଡ଼ା ଚାଳିଶ ଭାଗ ବା ପ୍ରାୟ ୩୫ କୋଟି ଲୋକ ଦାରିଦ୍ର୍ୟ ସୀମାରେଖାର ତଳେ ରହିଥିଲେ । ଏହି ଲୋକଙ୍କ ସଂଖ୍ୟା ୧୯୪୭ରେ ଭାରତର ସମୁଦାୟ ଜନସଂଖ୍ୟାଠାରୁ ଅଧିକ ଥିଲା ।

ଅର୍ଥାତ୍ ନିଜ ଦେଶରେ ଉତ୍ପାଦିତ ଶସ୍ୟକୁ କିଣିବା ପାଇଁ ମଧ୍ୟ ଭାରତର ଲୋକସଂଖ୍ୟାର ଏକ ବିରାଟ ଅଂଶ ଅସମର୍ଥ । ଭାରତର ଚାଷୀମାନେ ବର୍ତ୍ତମାନ ଏପରି ଫସଲ ଫଳାଇବା ପାଇଁ ବାଧ୍ୟ ଯାହାକୁ କି ସେମାନେ ନିଜେ କିଣି ଖାଇପାରିବେ ନାହିଁ । ଅନାହାର ମୃତ୍ୟୁ ପାଇଁ ଜଣାଶୁଣା ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ କ'ଣ ହେଲା ଦେଖନ୍ତୁ । ୧୯୯୬ର ମରୁଡ଼ିରେ କଳାହାଣ୍ଡିରେ ଅନାହାର ମୃତ୍ୟୁ ଘଟିଲା । ମୃତ୍ୟୁ ସଂଖ୍ୟା ସରକାରୀ ହିସାବରେ ଥିଲା ୧୬, କିନ୍ତୁ ଖବର କାଗଜମାନଙ୍କର ହିସାବରେ ୧୦୦ରୁ ଅଧିକ । ହେଲେ ୧୯୯୬ରେ କଳାହାଣ୍ଡିରେ ଧାନ ଉତ୍ପାଦନ ଦେଶର ହାରାହାରି ଉତ୍ପାଦନଠାରୁ ବି ଅଧିକ ଥିଲା ! କଳାହାଣ୍ଡି ଜିଲ୍ଲାରୁ ସେ ବର୍ଷ ଧାନ କେନ୍ଦ୍ରକୁ ରପ୍ତାନୀ କରା ଯାଇଥିଲା ।

ଦେଶ ପ୍ରଗତି କରିଛି ନିଶ୍ଚୟ । ହେଲେ ତା'ର ଅଧିକାଂଶ ଲୋକ କରି ନାହାନ୍ତି – ସେମାନେ ଯେଉଁ ତିମିରେକୁ ସେଇ ତିମିରେ । ଆମ ନେତାମାନେ କହୁଛନ୍ତି କି ପାକିସ୍ତାନ ଏବଂ ଚୀନର ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ଆମକୁ ପାରମାଣବିକ କ୍ଷେପଣାସ୍ତ୍ର ସଜିଲ୍ କରି ରଖିବାକୁ ପଡ଼ିବ । ହେଲେ ଆମେ ନିଜେ ଯଦି ଭସ୍ମାସୁର ସାଜିବା ତା'ହେଲେ ଆମକୁ ନିଜଠୁ ରକ୍ଷା କରିବ କିଏ ?

ଏ କେମିତିକା ଦେଶ ? କିଏ ଏହାର ମାଲିକ ? କିଏ ଏହାକୁ ଚଳାଉଛି ? ଏଠାରେ ସବୁ ଘଟୁଛି କ'ଣ ?

ଆସନ୍ତୁ ରାଷ୍ଟ୍ରର କିଛି ଗୁପ୍ତ କଥା ଉଖାଡ଼ି ଦେଖିବା । ଏହା ଗୋଟିଏ ବଡ଼ ମିଥକ ଯେ ଭାରତ ଗୋଟିଏ ନିକମା, ଅପାରଗ, ଦୁର୍ନୀତିଗ୍ରସ୍ତ, କିନ୍ତୁ ମୂଳତଃ ସହାନୁଭୂତିଶୀଳ ଏବଂ ଗଣତାନ୍ତ୍ରିକ ରାଷ୍ଟ୍ର । ଆସନ୍ତୁ ଏହି ମିଥକକୁ ଫୁଟାଇବା । କେବଳ ଅସାବଧାନତା ହେତୁ ପାଞ୍ଚ କୋଟି ଲୋକ ଉଭେଇଯିବେ ନାହିଁ । ସେମାନଙ୍କର କର୍ମ ଦୋଷରୁ ମଧ୍ୟ ଏପରି ଘଟିଯିବ ନାହିଁ । ତେଣୁ ଆମେ ଏଡ଼େ ବଡ଼ ମିଥ୍ୟାଚାରରେ ବିଶ୍ୱାସ କରିବା ଠିକ୍ ହେବନାହିଁ । ଏହି ବିସ୍ଥାପନ ହେଉଛି ସମ୍ପୂର୍ଣ୍ଣ ଯୋଜନାବଦ୍ଧ, ନିର୍ଦ୍ଦିଷ୍ଟ ଓ ଅଦମ୍ୟ ଚେଷ୍ଟାର ଫଳ ଏବଂ ନିଶ୍ଚିତ ଭାବରେ ମନୁଷ୍ୟକୃତ ।

ଭାରତୀୟ ରାଷ୍ଟ୍ର ଏକ ବିଫଳ ବ୍ୟବସ୍ଥା ନୁହେଁ । ଏହା ଯଥେଷ୍ଟ କାମିକା ଏବଂ ସଫଳ । ଏହି ରାଷ୍ଟ୍ର ବ୍ୟବସ୍ଥା ମୂଳରୁ ଧାର୍ଯ୍ୟ କରିଥିବା ଲକ୍ଷଗୁଡ଼ିକୁ ଅତି ସଫଳତାର ସହିତ ପୂରଣ କରିପାରିଛି । ଜମି, ଜଙ୍ଗଲ, ପାଣି, ମାଛ, ଗଛ, ପଶୁପକ୍ଷୀ, ପବନ ଭଳି ଭାରତର ସବୁ ପ୍ରାକୃତିକ ସମ୍ବଳକୁ ଏହି ରାଷ୍ଟ୍ର ବ୍ୟବସ୍ଥା ଅତି ସଫଳତାର ସହିତ ଅକ୍ତିଆର କରି ରଖିଛି ଏବଂ ତାହାର ପୁର୍ନବଣ୍ଟନ କରିଛି ଅଳ୍ପ କିଛି ପ୍ରିୟଜନଙ୍କ ଭିତରେ । କହିବା ବାହୁଲ୍ୟ ଯେ ଏହି ସୀମିତ

ପୁର୍ନବଣ୍ଟନର ଲାଭ ପାଇଥିବା ବ୍ୟକ୍ତିମାନେ ସେ ରାଷ୍ଟ୍ର ବ୍ୟବସ୍ଥା ପାଇଁ ମଧ୍ୟ ବେଶ୍ କିଛି ପ୍ରତିଦାନ ଦେଇଛନ୍ତି । ସେହି ରାଷ୍ଟ୍ର ବ୍ୟବସ୍ଥା ତା'ର ବେତନଭୋଗୀ ନିର୍ବାଚିତ ଗୋଷ୍ଠୀଙ୍କୁ ସୁରକ୍ଷା ଦେବାପାଇଁ ସୁନ୍ଦର ବ୍ୟବସ୍ଥା କରିଛି । ଏବଂ ତା'ର ଯୋଜନାରେ ବାଧା ଦେଉଥିବା ବ୍ୟକ୍ତିମାନଙ୍କୁ ଧୂଳିସାତ କରିବାର ବାଟକୁ ପକ୍କା କରିଛି । ତେବେ ସେହି ରାଷ୍ଟ୍ର ବ୍ୟବସ୍ଥାର ସବୁଠାରୁ ସୂକ୍ଷ୍ମ ନିପୁଣତା ଦେଖିବାକୁ ମିଳେ ଏହି ସବୁ କରିବାର ଧାରାରେ । କାରଣ ଏଭଳି ଅଶୋଭନୀୟ କାମ କରିବା ଭିତରେ ବି ସେ ନିଜକୁ ବେଶ୍ ଶୋଭନୀୟ ରୂପରେ ଦେଖାଇପାରେ । ଅତି ଚମତ୍କାର ଭାବରେ ସେ ରାଷ୍ଟ୍ର ନିଜର ଗୁପ୍ତ କଥାଗୁଡ଼ିକୁ ସୁରକ୍ଷିତ ରଖେ । ଏକଶହ କୋଟି ଲୋକଙ୍କ ନିତିଦିନିଆ ଜୀବନ ସହିତ ଯୋଡ଼ାଥିବା ଗୁରୁତ୍ୱପୂର୍ଣ୍ଣ ସୂଚନା ସବୁକୁ ସରକାରୀ ଫାଇଲ ଭିତରେ ଚାପିରଖେ, ଯାହାକୁ କେବଳ ମନ୍ତ୍ରୀ, ଅମଲା, ଇଞ୍ଜିନିଅର, ପ୍ରତିରକ୍ଷା ବିଶାରଦ ଆଦି ରାଷ୍ଟ୍ରର ବିଶ୍ୱସ୍ତ ରକ୍ଷକମାନେ ହିଁ ଦେଖିପାରନ୍ତି । ଅବଶ୍ୟ ଆମେ ହିତାଧିକାରୀମାନେ ତାଙ୍କର ଏହି ଲୁଚାଇବା କାମକୁ ଅଧିକ ସହଜ କରିଦେଉ । ଅତି ଗଭୀରକୁ ନଯିବା ପାଇଁ ଆମେ ଚେଷ୍ଟାକରୁ । ସେହି ଭୀତିପ୍ରଦ ଗୁପ୍ତକଥାଗୁଡ଼ିକୁ ଆମେ ପ୍ରକୃତରେ ଜାଣିବାକୁ ଚାହେଁନାହିଁ ।

ସ୍ୱାଧୀନତା ଆସିଲା ଆଉ ଗଲା । ନିର୍ବାଚନ ଆସେ ଆଉ ଯାଏ । ହେଲେ କିଛି ଅସଲ ପରିବର୍ତ୍ତନ ଆସି ନାହିଁ । ଆଉ ଏହାକୁ ସମ୍ଭବ କରାଇଛୁ କେବଳ ଆମେମାନେ । ବରଂ ପୁରୁଣା ଔପନିବେଶିକ ପ୍ରଶାସନ ବ୍ୟବସ୍ଥା ଯେ କେବଳ ତିଷ୍ଠି ରହିଛି ସେ କଥା ନୁହେଁ, ଅଧିକ ବଳଶାଳୀ ହୋଇଛି । ସମାଜରେ ବିଭାଜନ ଗଭୀରତର ହୋଇଛି । ଆମେ, ଶାସକମାନେ, ଟେବୁଲ୍ ଉପରୁ ମୁଣ୍ଡ ଉଠାଇ ଚାହିଁବାକୁ ପ୍ରସ୍ତୁତ ନୋହୁଁ । ମନେହୁଏ, ଆମେ ବୋଧହୁଏ ଜାଣିନାହୁଁ

ଯେ ଆମେ ଉପଭୋଗ କରିଚାଲିଥିବା ସମ୍ବଳଗୁଡ଼ିକ ସୀମିତ ଏବଂ ତାହା ଦ୍ରୁତ ଗତିରେ କ୍ଷୟହୋଇ ଚାଲିଛି । ବ୍ୟାଙ୍କରେ ସିନା ପଇସା ଅଛି, ହେଲେ ଆଉ ଅଳ୍ପ ଦିନ ପରେ ସେ ଟଙ୍କାରେ କିଣିବା ପାଇଁ ବଜାରରେ କିଛି ନଥିବ ଯେ । ହାଣ୍ଡିରୁ ଖାଦ୍ୟ ସରିଆସୁଛି, କିନ୍ତୁ ପରିଚାରକମାନେ ଖାଇ ନାହାନ୍ତି । ସତରେ ଦେଖିଲେ ପରିଚାରକମାନଙ୍କର ଖାଇବା ଅନେକ ଦିନରୁ ବନ୍ଦ ହୋଇଗଲାଣି ।

ଭାଷଣ ପରେ ଭାଷଣରେ ଆମେ ଶୁଣୁ ଯେ ଭାରତ ତା'ର ଗାଁମାନଙ୍କରେ ହିଁ ବଞ୍ଚି ରହିଛି । ଏହା ପୂରା ଭାଣ୍ଡାମୀ କଥା, ସରକାରଙ୍କର ଫୁଲନ୍ତା ପୋଷାକ ଭଣ୍ଡାରରୁ ଏହା କେବଳ ଗୋଟିଏ ଲଜ୍ୟାନିବାରକ କଉପୁନି । ଭାରତ ତା' ଗାଁରେ ବଞ୍ଚି ରହେନା । ଭାରତ ତା' ଗାଁମାନଙ୍କରେ ତିଳ ତିଳ ହୋଇ ମରେ । ଭାରତକୁ ତା'ର ଗାଁମାନଙ୍କରେ ମାରିଦିଆଯାଏ । ଭାରତ ବଞ୍ଚେ ତା'ର ସହରମାନଙ୍କରେ । ଭାରତର ଗାଁଗୁଡ଼ିକ ବଞ୍ଚିଛନ୍ତି କେବଳ ତା'ର ସହରମାନଙ୍କର ସେବା କରିବା ପାଇଁ । ଭାରତର ଗାଁଗୁଡ଼ିକ ରାଷ୍ଟ୍ରର ନାଗରିକମାନଙ୍କର ପରାଧୀନ ସେବକ ମାତ୍ର । ସେହି ଦୃଷ୍ଟିରୁ ତାଙ୍କୁ ନିୟନ୍ତ୍ରଣରେ ରଖିବାକୁ ହେବ ଏବଂ ବଞ୍ଚାଇ ମଧ୍ୟ ରଖିବାକୁ ହେବ, କିନ୍ତୁ ସର୍ବନିମ୍ନ ଜୀବନରୁ ଅଧିକ ମାତ୍ରାରେ ନୁହେଁ ।

ଆମର ଗୋଟିଏ ଧାରଣା ରହିଛି ଯେ ଭାରତୀୟ ରାଷ୍ଟ୍ର ବ୍ୟବସ୍ଥା ତା'ର ସମସ୍ୟା ସବୁର ବିଶାଳତା ଓ ଗଭୀରତା ଆଗରେ ଅସହାୟ ହୋଇପଡୁଛି । କିନ୍ତୁ ଏହା ହେଉଛି ଏକ ବିପଦଜନକ ଧାରଣା । ଅସଲ କଥା ହେଉଛି, ରାଷ୍ଟ୍ର ହିଁ ସମସ୍ୟାଗୁଡ଼ିକୁ ସୃଷ୍ଟିକରୁଛି । ଭାରତୀୟ ରାଷ୍ଟ୍ର ହେଉଛି ଏକ ବିଶାଳ ଦାରିଦ୍ର୍ୟ ସୃଷ୍ଟିକାରୀ କଳ । ଗରିବଙ୍କୁ ଅତି ଗରିବଙ୍କ ବିରୋଧରେ ଲଗାଇଦେବାରେ ତାହା ଧୁରନ୍ଧର । ନିଷ୍ପେଶିତ ଲୋକଙ୍କ ଆଗରେ ଖାଦ୍ୟ ଟୁକୁଡ଼ା ଫିଙ୍ଗି, ନିଜ

ନିଜ ଭିତରେ ତାଙ୍କୁ ଲଢ଼ାଇ, ତାଙ୍କର ସବୁ ଶକ୍ତି କ୍ଷୟ କରିଦେବାରେ ମଧ୍ୟ ଏ ରାଷ୍ଟ୍ର ଖୁବ୍ ପାରଙ୍ଗମ । ଏହି ସବୁ ଭିତରେ ଧନୀକମାନଙ୍କୁ ସେ ଶାନ୍ତି ଓ ପ୍ରଚାର ଭିତରେ ବୁଡ଼ାଇରଖେ ।

ଯେ ପର୍ଯ୍ୟନ୍ତ ଲୋକେ ଏଇ ମୌଳିକ ସତ ବିଷୟରେ ସଚେତନ ହୋଇନାହାନ୍ତି, ଯେ ପର୍ଯ୍ୟନ୍ତ ତାହା ଉପରେ ଆକ୍ରମଣ ହୋଇନାହିଁ, ସେ ପର୍ଯ୍ୟନ୍ତ ଲକ୍ଷେ ନିର୍ବାଚନରେ ଘମାଘୋଟ ଲଢ଼େଇ ହେଲେ ବି ତାହାର ମୂଲ୍ୟ କିଛି ରହିବ ନାହିଁ । ସେହି ନିର୍ବାଚନଗୁଡ଼ିକ କେବଳ କୃତ୍ରିମ ଲଢ଼େଇ ହେବ, ଯାହା ପ୍ରଚଳିତ ଅକଥନୀୟ ବୈଷମ୍ୟକୁ ଦୃଢ଼ତର ହିଁ କରିବ । ସେ ପର୍ଯ୍ୟନ୍ତ ଭାରତୀୟ ଗଣତନ୍ତ୍ର ଏକ ଶୋଷଣାଶ୍ରୟୀ ବ୍ୟବସ୍ଥାର କେବଳ ମୁଖା ଭାବରେ କାମ କରି ଚାଲିଥିବ । ଆଉ ଏ ଆଧୁନିକ, ନୂତନ ଶୋଷଣର ଫଳାଫଳ ଅତୀତର ଯେକୌଣସି ଯୁଦ୍ଧ ଏବଂ ଦୁର୍ଯୋଗରୁ ହେବ ଅଧିକ ଭୟଙ୍କର । ଏ ପର୍ଯ୍ୟନ୍ତ ଦେଶର ବିକାଶ କଳରେ ୫ କୋଟି ଲୋକ ପେଷିହୋଇ ସାରିଲେଣି । ଆଉ ସେ କଳରୁ ବାହାରୁଛି ରିହାତି ଦରରେ ତିଆରି ହୋଇଥିବା ମକାଖଇ (*ପପ୍‌କର୍ଣ୍ଣ*), ବାତାନୁକୂଳକ ଯନ୍ତ୍ର ଓ ରେୟନ୍ ଲୁଗା । ଆମର ଯଦି ଏଭଳି ମନଲୋଭା ଜିନିଷ ସବୁ ଅତି ଦରକାର, ତେବେ ତା'ର ପ୍ରକୃତ ମୂଲ୍ୟ ଅନ୍ତତଃ ଆମକୁ ଦେବାକୁ ପଡ଼ିବା ଉଚିତ ।

ଏ କଥା କହିବାକୁ ମୋତେ ବି ଦୁଃଖ ଲାଗୁଛି, କିନ୍ତୁ ରାଷ୍ଟ୍ର ଉପରେ ଆମର ବିଶ୍ୱାସ ଥିବା ଯାଏଁ ଆମପାଇଁ ଆଶାର ସମ୍ଭାବନା ନାହିଁ । ଯେ ପର୍ଯ୍ୟନ୍ତ ଆମର ସମ୍ପୂର୍ଣ୍ଣ ମୋହଭଙ୍ଗ ହୋଇନାହିଁ ସେ ପର୍ଯ୍ୟନ୍ତ କିଛି ବି ବଦଳିବ ନାହିଁ । ଆଶାର ତିଳେ ମାତ୍ର ସ୍ୱପ୍ନ ଦେଖିବାକୁ ହେଲେ ଆମକୁ ସେ ସ୍ଥିତାବସ୍ଥାର ବ୍ୟବସ୍ଥାରୁ ବିଶ୍ୱାସ ତୁଟାଇବାକୁ ହେବ । ନିର୍ଦ୍ଦିଷ୍ଟ ଲଢ଼େଇକୁ ଆମକୁ ନିର୍ଦ୍ଦିଷ୍ଟ ଧାରାରେ

ଲଢ଼ିବାକୁ ହେବ । ଖାଲି ଲଢ଼ିଲେ ଚଳିବ ନାହିଁ, ଜିତିବା ପାଇଁ ଲଢ଼ିବାକୁ ପଡ଼ିବ ।

ଶୁଣନ୍ତୁ ! ଅଥ ନର୍ମଦାୟାଃ କଥା । ଦୟାକରି ନର୍ମଦାର କାହାଣୀ ଶୁଣନ୍ତୁ ଏବଂ ଶୁଣିଲା ପରେ ଯଦି ଇଛା ହୁଏ ତେବେ ସେହି ଲଢ଼େଇରେ ଯୋଗ ଦିଅନ୍ତୁ । କିଏ ଜାଣେ? ହୁଏତ ଆପଣଙ୍କର ଯୋଗଦାନ ଆଣିପାରେ ଯାଦୁକରୀ ପରିବର୍ତ୍ତନ !

ନର୍ମଦାର ଜନ୍ମ ମଧ୍ୟପ୍ରଦେଶର ସାହଡୋଲ୍ ଜିଲ୍ଲାରେ, ଅମରକଣ୍ଟକ ମାଳଭୂମିରେ । ଏଠାରୁ ବାହାରି ସେ ତା'ର ୧୩୦୦ କି.ମି. ଲମ୍ବା ରାସ୍ତାରେ ସୁନ୍ଦର ଘଞ୍ଚ ଜଙ୍ଗଲ ଓ ଭାରତର ଉର୍ବରତମ ଚାଷଜମିକୁ ଡେଇଁ ଚାଲେ । ନର୍ମଦାର ଉପତ୍ୟକାରେ ରହନ୍ତି ଅଢ଼େଇ କୋଟି ଲୋକ । ସେମାନେ ପରସ୍ପର ସହିତ ଏବଂ ନିଜର ପରିବେଶ ସହିତ ଅଜସ୍ର ପ୍ରାଚୀନ ଏବଂ ଜଟିଳ ନିର୍ଭରଶୀଳତାର (ଏବଂ ଶୋଷଣର ମଧ୍ୟ) ସମ୍ପର୍କରେ ବନ୍ଧା । 'ଜଳ ସମ୍ପଦ ବିକାଶ' ଯୋଜନାରେ ଏହି ନଈ ଉପରେ ସରକାରଙ୍କ ଆଖି ଗତ ପଚାଶ ବର୍ଷ ହେଲା ଥିଲା । କିନ୍ତୁ ଏ ପର୍ଯ୍ୟନ୍ତ ଏ ନଈକୁ ମଣ କରି ନଥିବାର କାରଣ ହେଲା ଯେ ନଦୀଟି ତିନିଟି ରାଜ୍ୟ – ମଧ୍ୟପ୍ରଦେଶ, ମହାରାଷ୍ଟ୍ର ଓ ଗୁଜୁରାଟ – ଦେଇ ବହିଯାଇଛି । ନର୍ମଦାର ଶତକଡ଼ା ୯୦ ଭାଗ ରହିଛି ମଧ୍ୟପ୍ରଦେଶରେ । ମଧ୍ୟପ୍ରଦେଶ ଛାଡ଼ିଲା ପରେ ତାହା ମହାରାଷ୍ଟ୍ରର ଉତ୍ତରାଂଶକୁ ଛୁଇଁ ଦେଇ ଗୁଜୁରାଟରେ ୧୮୦ କି.ମି. ବହି ଭାରୁଚ୍‌ଠାରେ ଆରବସାଗରରେ ପଡ଼ିଛି ।

୧୯୪୬ରେ ଗୁଜୁରାଟର ଗୋରାଠାରେ ନଈକୁ ବନ୍ଧେଇବା ପାଇଁ ପ୍ରଥମେ ଯୋଜନା ହୋଇଥିଲା । ୧୯୬୧ରେ ନେହେରୁ ଗୋଟିଏ ୪୯.୮ ମିଟର ଉଚ୍ଚା ବନ୍ଧର ଶୁଭ ଏଠାରେ ଦେଇଥିଲେ । ଏହା ଥିଲା ସର୍ଦ୍ଦାର ସରୋବର ବନ୍ଧର ଏକ ବାମନରୂପୀ ପୂର୍ବପୁରୁଷ । ପ୍ରାୟ

ସେହି ସମୟରେ ସର୍ଭେ ଅଫ୍ ଇଣ୍ଡିଆ ନର୍ମଦା ଅବବାହିକାର ଏକ ନୂଆ ଭୂରୈଖିକ ମାନଚିତ୍ର ପ୍ରସ୍ତୁତ କଲେ । ଗୁଜୁରାଟର ବନ୍ଧ ନିର୍ମାତାମାନେ ଏ ନୂଆ ମାନଚିତ୍ର ଦେଖିଲେ ଆଉ ହିସାବ କଲେ ଯେ ଗୋଟିଏ ବେଶ୍ ବଡ଼ ବନ୍ଧ କରିବା ଅଧିକ ଲାଭଜନକ ହେବ । କିନ୍ତୁ ଏଥିପାଇଁ ପଡ଼ୋଶୀ ରାଜ୍ୟମାନଙ୍କ ସହିତ ସହମତି ଜରୁରୀ ଥିଲା ।

ତିନୋଟିଯାକ ରାଜ୍ୟ ଭିତରେ ତର୍କ ଓ ମୂଳଚାଲ ଚାଲିଲା, କିନ୍ତୁ ଜଳ-ବଣ୍ଟନ ପାଇଁ କୌଣସି ସୂତ୍ର ବାହାରି ପାରିଲା ନାହିଁ । ଶେଷରେ କେନ୍ଦ୍ର ସରକାର ୧୯୬୯ରେ ନର୍ମଦା ଜଳ ବିବାଦ ଟ୍ରିବ୍ୟୁନାଲ ଗଠନ କଲେ । ଟ୍ରିବ୍ୟୁନାଲ ତା'ର ରାୟ ଶୁଣାଇବା ପାଇଁ ଦଶ ବର୍ଷ ନେଲା । *ଏତେ ଲମ୍ବା ସମୟ ବିତି ଯାଇଥିଲେ ମଧ୍ୟ ଯେଉଁ ଲୋକେ ଏ ପ୍ରକଳ୍ପ ଦ୍ୱାରା ପ୍ରଭାବିତ ହେବେ, ସେମାନଙ୍କୁ କୌଣସି ସରକାର ବିଶ୍ୱାସକୁ ନେଲେ ନାହିଁ, କି କେହି କିଛି ସୂଚନା ଦେଲେ ନାହିଁ ବା ତାଙ୍କୁ ପଚାରିଲେ ନାହିଁ ।*

ରାଜ୍ୟମାନଙ୍କ ମଧ୍ୟରେ ପାଣି ବାଣ୍ଟିବା ଆଗରୁ ଟ୍ରିବ୍ୟୁନାଲର ପ୍ରଥମ କାମ ହେଲା ନଈରେ ବହୁଥିବା ପାଣିର ପରିମାଣ ଜାଣିବା । ସାଧାରଣତଃ ଗୋଟିଏ ନଈର ୪୦ ବର୍ଷର ପ୍ରକୃତ ପ୍ରବାହର ହାରାହାରି ନିଆଯାଇ ଏହି ପରିମାଣ ହିସାବ କରାଯାଏ । ମାତ୍ର ନର୍ମଦାରେ ପାଣିର ପ୍ରବାହ ବିଷୟରେ ଏପରି କୌଣସି ତଥ୍ୟ ନଥିଲା । ତେଣୁ ଟ୍ରିବ୍ୟୁନାଲ୍ ବୃଷ୍ଟିପାତର ପରିମାଣ ବ୍ୟବହାର କରି ହିସାବ କଲେ ଯେ ନଈରେ ପ୍ରବାହିତ ପାଣିର ପରିମାଣ ହେଲା ୨୭.୨୨ ଏମ୍.ଏ.ଏଫ୍. *(ମିଲିଅନ୍ ଏକର ଫିଟ୍* – ଦଶଲକ୍ଷ ଏକର ଜାଗାରେ ଏକ ଫୁଟ ଗଭୀରର ପାଣି) । ନର୍ମଦା ଉପତ୍ୟକାର ସମସ୍ତ ପ୍ରକଳ୍ପର ଭିତ୍ତି ଏହି ସଂଖ୍ୟା ହିଁ ଅଟେ । ଏବେ ମଧ୍ୟ ଆମେ ତାହା ଦ୍ୱାରା ପ୍ରଭାବିତ ହୋଇ ରହିଛେ । ନର୍ମଦାର ସବୁ ପ୍ରକଳ୍ପର ଉଚ୍ଚତା,

ସ୍ଥାନ, ବନ୍ଧର ସଂଖ୍ୟା ଆଦି ସବୁ କିଛି ଏହି ସଂଖ୍ୟା ଦ୍ୱାରା ନିର୍ଦ୍ଧାରିତ ହୁଏ । ଏହା ମଧ୍ୟ ପରୋକ୍ଷ ଭାବରେ ସ୍ଥିରକରେ ପ୍ରକଳ୍ପର ବ୍ୟୟ ଅଟକଳ କେତେ ହେବ, କେତେ ଅଞ୍ଚଳ ବୁଡ଼ିବ, କେତେ ଲୋକ ବିସ୍ଥାପିତ ହେବେ ଏବଂ ପ୍ରକଳ୍ପରୁ କେତେ ଲାଭ ମିଳିବ । କିନ୍ତୁ ୧୯୯୨ ମସିହାରେ ନର୍ମଦାରେ ୪୪ ବର୍ଷର (୧୯୪୮-୧୯୯୨) ପ୍ରକୃତ ଜଳ ପ୍ରବାହର ହିସାବ ମିଳିଲା । ଏହି ହିସାବ ଅନୁଯାୟୀ ନର୍ମଦାରେ ପ୍ରବାହିତ ଜଳର ପ୍ରକୃତ ପରିମାଣ ହେଲା ୨୨.୬୯ ଏମ୍.ଏ.ଏଫ୍. । ଅର୍ଥାତ୍ ପୂର୍ବର ହିସାବ ତୁଳନାରେ ଶତକଡ଼ା ଅଠର ଭାଗ କମ୍ । ଜାତୀୟ ଜଳ କମିଶନ୍ ମଧ୍ୟ ଶେଷରେ ସ୍ୱୀକାର କଲେ ଯେ ନର୍ମଦାରେ ପ୍ରବାହିତ ଜଳର ପରିମାଣ ପୂର୍ବର ହିସାବଠାରୁ କମ୍ । କିନ୍ତୁ ଆମ ସରକାର କ'ଣ କହନ୍ତି ଶୁଣନ୍ତୁ -

> *"ଏହା ଦ୍ରଷ୍ଟବ୍ୟ ଯେ ଟ୍ରିବ୍ୟୁନାଲ୍‌ର ନିଷ୍ପତ୍ତି ସମ୍ପର୍କୀତ ଦ୍ୱିତୀୟ ଧାରା, ଯାହାକି ଜଳପ୍ରବାହକୁ ୨୮ ଏମ୍.ଏ.ଏଫ୍.ରେ ନିର୍ଦ୍ଧାରିତ କରେ, ଅପରିବର୍ତ୍ତନୀୟ ଅଟେ ।"*

ଅନ୍ୟ ଶବ୍ଦରେ କହିବାକୁ ଗଲେ ମଣିଷର ନିଷ୍ପତି ଅନୁସାରେ ନର୍ମଦାକୁ ନିଜ ଦେହରେ ସରକାରଙ୍କ ଦ୍ୱାରା ଘୋଷିତ ପରିମାଣର ଜଳ ପ୍ରବାହିତ କରିବାକୁ ହେବ । ଏ କଥା ନକରି ବିଚାରୀ ନର୍ମଦାର ବାଟ ନାହିଁ, କାରଣ ଏହା ହେଉଛି ଆଇନ୍‌ଗତ ବ୍ୟାପାର ।

ନର୍ମଦା ଉପତ୍ୟକା ପ୍ରକଳ୍ପର ପ୍ରାୟୋଜକମାନଙ୍କ କହିବା ଅନୁସାରେ ଏହି ପ୍ରକଳ୍ପ ହେଉଛି ମଣିଷ ସଭ୍ୟତାର ଇତିହାସରେ ସର୍ବବୃହତ । ପ୍ରକଳ୍ପ ପୂରା ହେଲା ବେଳକୁ ନର୍ମଦା ଓ ତା'ର ୪୧ଟି ଶାଖା ନଦୀମାନଙ୍କ ଉପରେ ବସି ସାରିଥିବ ୩୨୦୦ଟି ଛୋଟ ବଡ଼ ବନ୍ଧ । ଏସବୁର ପ୍ରଭାବରେ ସେହି ନଦୀତନ୍ତଟି ପାଲଟିଯିବ ଥାକ ଥାକ ହୋଇ ଖଞ୍ଜା ହୋଇଥିବା ଅସଂଖ୍ୟ ଜଳଭଣ୍ଡାରରେ ଏବଂ

ସେଥିରେ ସାଇତା ହୋଇ ରହିଥିବ କାମରେ ଲାଗି ପାରୁଥିବା ପ୍ରଚୁର ଜଳ । ଏହି ବନ୍ଧଗୁଡ଼ିକ ଭିତରୁ ୩୦ଟି ହେବ ବୃହତ ବନ୍ଧ, ୧୩୫ଟି ମଝିଆଁ ଏବଂ ବାକି ସବୁ ଛୋଟ । ମଧ୍ୟପ୍ରଦେଶର ନର୍ମଦା ସାଗର ଏବଂ ଗୁଜୁରାଟର ସର୍ଦ୍ଦାର ସରୋବର ଜଳଭଣ୍ଡାର ହେବେ ଦୁଇଟି ଅତିବୃହତ୍ ବହୁମୁଖୀ ଯୋଜନା । ନିଜ ଭିତରେ ସେ ଦୁହେଁ ଧରି ରଖିବେ ଭାରତୀୟ ଉପମହାଦେଶରେ ଥିବା ଯେକୌଣସି ଜଳଭଣ୍ଡାରଠାରୁ ଅଧିକ ଜଳ ।

ଯେପରି ଭାବରେ ଦେଖିଲେ ବି ନର୍ମଦା ଉପତ୍ୟକା ବିକାଶ ପ୍ରକଳ୍ପ ହେବ ବିଶାଳ । ଏହି ପ୍ରକଳ୍ପ ଭାରତର ଗୋଟିଏ ବୃହତ୍ତମ ନଦୀ ଅବବାହିକାର ପରିବେଶକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେବ । ଭଲରେ ହେଉ ବା ମନ୍ଦରେ, ଏହା ସେହି ଅବବାହିକାରେ ରହୁଥିବା ଅଢ଼େଇ କୋଟି ଲୋକଙ୍କର ଜୀବନକୁ ପ୍ରଭାବିତ କରିବ । କିନ୍ତୁ ପରିବେଶ ମନ୍ତ୍ରଣାଳୟ ପ୍ରକଳ୍ପଟିକୁ ସ୍ୱୀକୃତି ଦେବା ଆଗରୁ ତା'ର ମୁଖ୍ୟ ଅଂଶ – ସର୍ଦ୍ଦାର ସରୋବର ବନ୍ଧ – ପାଇଁ ଅର୍ଥ ଯୋଗାଇବାକୁ ବିଶ୍ୱବ୍ୟାଙ୍କ ଆଗେଇ ଆସିଥିଲା । ସର୍ଦ୍ଦାର ସରୋବର ବନ୍ଧ ଯୋଗୁଁ ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ରରେ ଲୋକ ବିସ୍ଥାପିତ ହେବେ, କିନ୍ତୁ ବନ୍ଧର ଲାଭ ପାଇବ ଗୁଜୁରାଟ ପ୍ରଦେଶ । ସେ ପର୍ଯ୍ୟନ୍ତ ପ୍ରକଳ୍ପର ବ୍ୟୟ ଅଟକଳ, ପରିବେଶ ଉପରେ ତା'ର ପ୍ରଭାବର ଆକଳନ, ମଣିଷ ଜୀବନ ଦୃଷ୍ଟିରୁ ବନ୍ଧର ମୂଲ୍ୟ ଆଦି ଉପରେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ଏକାଠି କରାଯିବା ଆଗରୁ ବିଶ୍ୱବ୍ୟାଙ୍କ ସେ ପ୍ରକଳ୍ପରେ ଟଙ୍କା ଖଟାଇବା ପାଇଁ ନିଜର ଚେକ୍ ବହି ଧରି ଠିଆ ହୋଇ ସାରିଥିଲା । କି ବଦାନ୍ୟତା ସତରେ!

ସର୍ଦ୍ଦାର ସରୋବର ପ୍ରକଳ୍ପ ପାଇଁ ୪୫ କୋଟି ଡଲାର (ବର୍ତ୍ତମାନ ୨୦୦୦ କୋଟି ଟଙ୍କା)ର ଋଣ ୧୯୮୫ରୁ ଅନୁମୋଦିତ ହୋଇ

ସାରିଥିଲା । ହେଲେ ଏଥିପାଇଁ ପରିବେଶ ମନ୍ତ୍ରଣାଳୟର ସ୍ୱୀକୃତି ମିଳିଲା ୧୯୮୭ରେ । କି ଅପୂର୍ବ ଉତ୍ସାହ ସତରେ! କିନ୍ତୁ ଆସନ୍ତୁ ଦେଖିବା ଏ ଉତ୍ସାହର କାରଣ କ'ଣ?

୧୯୪୭ରୁ ୧୯୯୪ ଭିତରେ ବିଶ୍ୱବ୍ୟାଙ୍କ ପାଖରେ ଋଣ ପାଇଁ ପାଖାପାଖି ୬୦୦୦ ଆବେଦନ ପତ୍ର ପହଞ୍ଚିଛି । ଏବଂ ବ୍ୟାଙ୍କ ଏଥିରୁ ଗୋଟିଏ ମଧ୍ୟ ଆବେଦନ ପତ୍ର ଅଗ୍ରାହ୍ୟ କରିନାହିଁ । ଗୋଟିଏ ବି ନୁହେଁ! ଏହା ପଛରେ ରହିଛି 'ଚଳନ୍ତି ଟଙ୍କା' ଓ 'ଋଣ ଲକ୍ଷ ଭରଣା' ଭଳି ଶବ୍ଦମାନଙ୍କର ପ୍ରଚ୍ଛନ୍ନ ଅର୍ଥ । ଗରିବ ଦେଶମାନଙ୍କର ସାହୁକାର ସାଜିବା ବ୍ୟାଙ୍କ ପାଇଁ ଏକ ଲାଭଜନକ ବ୍ୟବସାୟ ।

ବର୍ତ୍ତମାନ ଭାରତ ଏପରି ଏକ ପରିସ୍ଥିତିରେ ପହଞ୍ଚିଛି ଯେଉଁଠି ବିଶ୍ୱବ୍ୟାଙ୍କଠାରୁ ଆମେ ପାଉଥିବା ଟଙ୍କାଠାରୁ ବେଶି ଟଙ୍କା ଆମେ ସୁଧ ଓ ମୂଳ ଭାବରେ ବ୍ୟାଙ୍କକୁ ଫେରାଉଛେ । ପୁରୁଣା ଋଣ ସୁଝିବା ପାଇଁ ଆମକୁ ନୂଆ ଋଣ ଆଣିବାକୁ ହେଉଛି । ୧୯୯୮ର ହିସାବ ଅନୁସାରେ ଭାରତ ପାଇଥିବା ଟଙ୍କାଠାରୁ ୪୭.୮ କୋଟି ଡଲାର (ପ୍ରାୟ ୨୨୦୦ କୋଟି ଟଙ୍କା) ଅଧିକ ବ୍ୟାଙ୍କକୁ ଫେରାଇଛି । ଗତ ପାଞ୍ଚ ବର୍ଷର (୧୯୯୩ରୁ ୧୯୯୮) ହିସାବକୁ ମିଶାଇଦେଲେ ଆମେ ଅଧିକା ଫେରାଇଥିବା ଅର୍ଥର ପରିମାଣ ହେଉଛି ୧୪୭.୫ କୋଟି ଡଲାର (ପ୍ରାୟ ୬୬୦୦ କୋଟି ଟଙ୍କା)ରୁ ଅଧିକ । ଭାରତ ଏବଂ ବିଶ୍ୱବ୍ୟାଙ୍କ ମଧ୍ୟରେ ସମ୍ପର୍କ ହେଉଛି ଠିକ୍ ଜଣେ ଋଣରେ ବୁଡ଼ିଥିବା ଭୂମିହୀନ ଶ୍ରମିକ ଓ ବଣିଆ ସାହୁକାରର ସମ୍ପର୍କ ପରି । ଗୋଟିଏ ଦୃଷ୍ଟିରୁ ଏହା ଏକ ଶ୍ରଦ୍ଧାର ସମ୍ପର୍କ – ଯେ ଗରିବ ଲୋକର ଅଭାବ ଅସୁବିଧା ବେଳେ ସାହୁକାର ପାଖରେ ହିଁ ଥାଏ । ହୁଏତ ଏହିଭଳି କାରଣରୁ ଆଜି ଆମେ ପୃଥିବୀକୁ ଗୋଟିଏ 'ବିଶ୍ୱ ଗ୍ରାମ' ବୋଲି କହୁଛେ । ହେଲେ ଜଣେ ଗରିବ ଖାତକ ଓ ଭାରତ ସରକାରଙ୍କ

ଭିତରେ ଗୋଟିଏ ବଡ଼ ତଫାତ ଅଛି । ଖାତକ ବିଚରା ଟଙ୍କା ଧାର ନିଏ ତିଷ୍ଠି ରହିବା ପାଇଁ । ଭାରତ ସରକାର ଟଙ୍କା ଧାର ନିଅନ୍ତି ନିଜ ଅଧିକାରୀ ଓ ଦଲାଲମାନଙ୍କର ବ୍ୟକ୍ତିଗତ ସମୃଦ୍ଧି ପାଇଁ ଏବଂ ସେଥିପାଇଁ ଦେଶକୁ ମୁକ୍ତିର ସମ୍ଭାବନା ନଥିବା ଅର୍ଥନୈତିକ ଦାସତ୍ୱ ଭିତରକୁ ଠେଲି ଦିଅନ୍ତି ।

ଆନ୍ତର୍ଜାତୀୟ ନଦୀବନ୍ଧ ଶିଳ୍ପର ବାର୍ଷିକ ବ୍ୟବସାୟର ପରିମାଣ ହେଲା ୨୦୦୦ କୋଟି ଡଲାର ବା ପ୍ରାୟ ୧୦ ଲକ୍ଷ କୋଟି ଟଙ୍କା । ଆପଣ ଯଦି ବିଶ୍ୱସାରା ବନ୍ଧରୁ ବନ୍ଧ ଡେଇଁ ବୁଲିବେ – ଗୁଏଟାମାଲା, ବ୍ରାଜିଲ, ଜାପାନ, ଚୀନ, ଥାଇଲାଣ୍ଡ, ମାଲେସିଆ ଯେଉଁ ଦେଶକୁ ବି ଯା'ନ୍ତୁ – ତାହାହେଲେ ଆପଣ ସେଇ ଏକା କାହାଣୀ ଶୁଣିବେ, ସେଇ ଏକା ଅଭିନେତାମାନଙ୍କୁ ଭେଟିବେ । ସେ ଚରିତ୍ରସମୂହଙ୍କର ଏକ ସାଧାରଣ ନାଁ ହେଲା ଲୌହ ତ୍ରିଭୁଜ – ରାଜନେତା, ଅମଲା ଏବଂ ବନ୍ଧ ତିଆରି କମ୍ପାନୀ ଓ କାନ୍ତରାଟିମାନଙ୍କର ଏକ ଅଶୁଭ ତ୍ରିମୁଖି ମେଣ୍ଟ । ଆପଣ ଆହୁରି କିଛି ଲୋକଙ୍କୁ ଭେଟିବେ ଯେଉଁମାନେ ଆନ୍ତର୍ଜାତୀୟ ପରିବେଶୀୟ ପରାମର୍ଶଦାତା ଭାବରେ ନିଜର ପରିଚୟ ଦିଅନ୍ତି – ହେଲେ ତାଙ୍କର ଅସଲି କାମ ହେଲା ଦଲାଲି, ଆଉ ତାଙ୍କର ଅସଲ ମାଲିକ ହେଲେ ବନ୍ଧ ତିଆରି କମ୍ପାନୀମାନେ । ଆହୁରି ମଧ୍ୟ ଆପଣ ଭେଟିବେ ଆମର ସାଥୀ ଓ ପଡ଼ୋଶୀ ବିଶ୍ୱ ବ୍ୟାଙ୍କକୁ । ଆପଣ ଏସବୁ ଜାଗାରେ ସେଇ ପୁରୁଣା ଭାଷଣବାଜୀ ଶୁଣିବେ । ଆଉ ଶୁଣିବେ 'ଲୋକଙ୍କ ପାଇଁ ବନ୍ଧ' ବିଷୟରେ, ଆଉ ଦେଖିବେ ଯେକୌଣସି ବନ୍ଧ ବିରୋଧୀ ନାଗରିକ ଆନ୍ଦୋଳନର ସୂଚନା ମିଳିବା ମାତ୍ରେ ତାହା ଉପରେ ବର୍ବର ଦମନ ଲୀଳା । ଅବଶ୍ୟ ନର୍ମଦା ଉପତ୍ୟକାର ଅନୁଭୂତି ପରେ ବିଶ୍ୱବ୍ୟାଙ୍କ ଏବେ ଟିକେ ଅଧିକ ସତର୍କ ହୋଇଯାଇଛି । ବ୍ୟାପକ ବିସ୍ଥାପନ କରାଉଥିବା ପ୍ରକଳ୍ପ କ୍ଷେତ୍ରରେ



ବିଶ୍ୱବ୍ୟାଙ୍କ ଭାରତକୁ ଦେଇଥିବା ଋଣର ଏବଂ ପ୍ରକୃତରେ ଦେଶକୁ ଆସୁଥିବା ଟଙ୍କାର ପରିମାଣ (ନିୟୁତ ଡଲାରରେ)

| | ଜୁନ ୩୦ରେ ପରୁଥିବା ଆର୍ଥିକ ବର୍ଷ | | | | | | ମୋଟ | |
|---|---|---|---|---|---|---|---|---|
| | ୧୯୯୩ | ୧୯୯୪ | ୧୯୯୫ | ୧୯୯୬ | ୧୯୯୭ | ୧୯୯୮ | ୧୯୮୯-୯୩ | ୧୯୯୪-୯୮ |
| ୧· ଭାରତର ମୋଟ ପ୍ରାପ୍ୟ | ୧,୯୫୪ | ୧,୭୧୬ | ୧,୭୮୩ | ୧,୩୦୯ | ୧,୫୬୩ | ୧,୩୭୫ | ୧୦,୪୩୬ | ୭,୭୪୬ |
| ୨· ପରିଶୋଧ ପରିମାଣ | ୮୩୪ | ୯୬୩ | ୧,୦୬୨ | ୧,୧୪୯ | ୧,୦୭୦ | ୧,୧୪୭ | ୨,୯୮୭ | ୫,୩୯୧ |
| ୩· ନିଟ୍ ପ୍ରାପ୍ୟ (୧-୨) | ୧,୧୨୦ | ୭୫୩ | ୭୨୧ | ୧୬୧ | ୪୯୩ | ୨୨୮ | ୭,୪୪୯ | ୨,୩୫୫ |
| ୪· ସୁଧ ଓ ମାହାସୁଲ | ୮୨୮ | ୮୩୮ | ୯୦୪ | ୮୮୪ | ୭୯୦ | ୭୦୬ | ୩,୫୭୩ | ୪,୧୨୨ |
| ୫· ପ୍ରକୃତରେ ଆସିଛି (୩-୪) | ୨୯୨ | -୮୫ | -୧୮୩ | -୭୨୩ | -୨୯୭ | -୪୭୮ | ୩,୮୭୬ | -୧,୭୬୭ |

ବି·ଦ୍ର·  ଉଭୟ ଆଇବିଆରଡି ଏବଂ ଆଇଡିଏ ଠାରୁ ମିଳିଥିବା ସହାୟତା ।

ଉତ୍ସ:  ବିଭିନ୍ନ ବର୍ଷର ବିଶ୍ୱବ୍ୟାଙ୍କ ବାର୍ଷିକ ବିବରଣୀ ।

ଋଣ ଦେବାପାଇଁ ଦେଶ ବାଛିବାରେ ଏବେ ସେ ବେଶି ସାବଧାନ ହେଉଛି । ବର୍ତ୍ତମାନ ଚୀନ ହେଉଛି ବ୍ୟାଙ୍କର ପ୍ରିୟତମ ସୁନା ପୁଅ । ଏହା ହେଉଛି ଆମ ସମୟର ଗୋଟିଏ ବଡ଼ ବିଡ଼ମ୍ବନା - ତିଏନାନ୍‌ମେନ୍ ଗଣହତ୍ୟା ବିରୁଦ୍ଧରେ ଆମେରିକାର ନାଗରିକମାନେ ପ୍ରତିବାଦ କରୁଛନ୍ତି, ହେଲେ ବିଶ୍ୱ ବ୍ୟାଙ୍କ ସେହି ଲୋକଙ୍କ ପଇସା ଖଟାଇ ହିଁ ତିଆରି କରୁଛି ଥ୍ରି ଗର୍ଜେସ୍ ନଦୀବନ୍ଧ । ଏହି ବନ୍ଧ ବିସ୍ଥାପିତ କରିବ ୧୩ ଲକ୍ଷ ଲୋକଙ୍କୁ ।

ଏହି ବନ୍ଧ ତିଆରି କାମ ହେଉଛି ଗୋଟିଏ ଦକ୍ଷ ସର୍କସ ଆଉ ସେଥିରେ ଭାଗ ନେଉଥିବା ସବୁ ଖେଳାଳୀ ନିଜନିଜକୁ ଭଲ ଭାବରେ ଜାଣନ୍ତି । ବେଳେ ବେଳେ ଏଠି ନିଜ ନିଜ ଭିତରେ କାମର ଅଦଳ ବଦଳ ମଧ୍ୟ କରାଯାଏ । ଜଣେ ଅମଲା (ସାଧାରଣତଃ ବରିଷ୍ଠ ଆଇ·ଏ·ଏସ୍· ଅଫିସର) ଆଜି ବିଶ୍ୱବ୍ୟାଙ୍କରେ ଯୋଗ ଦେଇପାରେ, ଆଉ ବ୍ୟାଙ୍କର କେହି କର୍ମଚାରୀ ହଠାତ୍ ଜଣେ ପ୍ରକଳ୍ପ ପରାମର୍ଶଦାତାର ଭୂମିକାରେ ଉଭା ହୋଇପାରେ । ସର୍କସ ଶେଷ ହେଲାବେଳକୁ 'ବିକାଶ ସହାୟତା' ନାମରେ ଆସିଥିବା ଅର୍ଥର ଅଧିକାଂଶ ଭାଗ ଯେଉଁ ଦେଶରୁ ଆସିଥାଏ ସେ ଦେଶକୁ ଫେରି ଚାଲିଯାଇଥାଏ । ସିଧାସଳଖ ନୁହେଁ - ଯାନ୍ତ୍ରପାତିର ମୂଲ୍ୟ, ପରାମର୍ଶଦାତାଙ୍କ ପାଉଣା କିମ୍ବା ବ୍ୟାଙ୍କର ନିଜ କର୍ମଚାରୀଙ୍କର ଦରମାର ରୂପରେ ଏହି ଟଙ୍କାର ଫେରନ୍ତା ଯାତ୍ରା ହୋଇଥାଏ । ଅନେକ ସମୟରେ ଏଭଳି ସହାୟତା ସହିତ ଖୋଲାଖୋଲି ଭାବରେ ବ୍ୟବସାୟିକ ଚୁକ୍ତି ଯୋଡ଼ା ହୋଇଥାଏ । ଯେମିତିକି ସର୍ଦ୍ଦାର ସରୋବର ବନ୍ଧ ପାଇଁ ଉଦ୍ଦିଷ୍ଟ ଜାପାନୀ ଋଣ ସହିତ ସର୍ତ୍ତ ଥିଲା ଯେ ଗୋଟିଏ ଜାପାନୀ କମ୍ପାନୀ 'ସୁମିଟୋମୋ କର୍ପୋରେସନ'ଠାରୁ ହିଁ ଟର୍‌ବାଇନ୍ କିଣାଯିବ । ବେଳେବେଳେ ଏଭଳି ସମ୍ପର୍କଗୁଡ଼ିକ ଅଧିକ

ଲୁଟାଚୋରା ଆଉ ମାରାତ୍ମକ । ଏହାର ଗୋଟିଏ ଉଦାହରଣ ଦେଖନ୍ତୁ – ୧୯୯୩ରେ ପେରଗାଉ ବନ୍ଧ ନିର୍ମାଣ ପାଇଁ ବ୍ରିଟେନ୍ ମାଲେସିଆ ସରକାରକୁ ୨୩.୪ କୋଟି ପାଉଣ୍ଡର ଏକ ଋଣ ଦେବାକୁ ରାଜି ହେଲା । ଏ ବଦାନ୍ୟତା ଓ.ଡି.ଏ. (ଓଭରସିସ୍ ଡେଭ୍‌ଲପମେଣ୍ଟ ଆଡ୍‌ମିନିଷ୍ଟ୍ରେସନ୍)ର ଏ ରିପୋର୍ଟ ସତ୍ତ୍ୱେ ଯେ ଏହି ବନ୍ଧ ମାଲେସିଆ ପାଇଁ ବିଶେଷ ଲାଭଜନକ ହେବ ନାହିଁ । ପଛରେ ଏ କଥା ମାଲୁମ ପଡ଼ିଲା କି ଏହି ଶସ୍ତା ଋଣର ଅସଲ ଲକ୍ଷ ଥିଲା ୧୩୦ କୋଟି ପାଉଣ୍ଡ (୯୦୦୦ କୋଟି ଟଙ୍କାରୁ ବେଶୀ) ମୂଲ୍ୟର ବ୍ରିଟିଶ୍ ଯୁଦ୍ଧାସ୍ତ୍ର କିଣିବା ପାଇଁ ମାଲେସିଆ ସରକାରଙ୍କୁ ପ୍ରବର୍ତ୍ତାଇବା ।

୧୯୯୪ରେ ବ୍ରିଟେନ୍‌ର ବନ୍ଧ ପରାମର୍ଶଦାତାମାନେ ବିଭିନ୍ନ ଦରିଆପାରି ପ୍ରକଳ୍ପରୁ ତାଙ୍କର ପାଉଣା ଆକାରରେ ୨୫୦ କୋଟି ପାଉଣ୍ଡ (ପ୍ରାୟ ୨୦,୦୦୦ କୋଟି ଟଙ୍କା) କମେଇଥିଲେ । ପ୍ରକଳ୍ପ ପରିଚାଳନା ପରେ ଏ ଦଲାଲି ବଜାରର ସବୁଠାରୁ ବଡ଼ କାରବାର ହେଲା *ଇ.ଆଇ.ଏ. (ଏନ୍‌ଭାଇରନ୍‌ମେଣ୍ଟାଲ ଇମ୍ପାକ୍ଟ ଆସେସ୍‌ମେଣ୍ଟ* ବା ପରିବେଶୀୟ ପ୍ରଭାବ ଆକଳନ) ରିପୋର୍ଟ ପ୍ରସ୍ତୁତ କରିବା । ବିକାଶ ନାଁରେ ଚୋରା କାରବାର ସବୁର ନିୟମମାନ ଅତି ସରଳ । ଧରନ୍ତୁ ସରକାର ଆପଣଙ୍କୁ *ଇ.ଆଇ.ଏ.* ପ୍ରସ୍ତୁତ କରିବାକୁ ଡାକିଲା । ଆଉ ଆପଣ ସେ ବନ୍ଧ ଯୋଜନାରେ କିଛି ସମସ୍ୟା ଦେଖିଲେ । ଧରନ୍ତୁ ଆପଣ କହିଲେ କି ପ୍ରକଳ୍ପ ପାଇଁ ନଈରେ ଯଥେଷ୍ଟ ପାଣି ନାହିଁ । କିମ୍ବା, ଭଗବାନ ନ କରନ୍ତୁ, ଆପଣ ମତ ଦେଲେ ଯେ ଲୋକଙ୍କ ଉପରେ ଏହାର ପ୍ରଭାବ ଖୁବ୍ ଖରାପ ହେବ । ତା'ହେଲେ ଆପଣ ଆଉ ଆପଣଙ୍କ କାମ ଖତମ୍ । ଆପଣ ପାଲଟିଯିବେ ଜଣେ 'ବେକାର ପରାମର୍ଶଦାତା' । ଆଉ କେହି ଆପଣଙ୍କୁ *ଇ.ଆଇ.ଏ.* କରିବାକୁ ଡାକିବେ ନାହିଁ । ତା'ମାନେ ଆପଣଙ୍କୁ ସେ ମୋଟା ପାଉଣା ମିଳିବ

ନାହିଁ, ଆପଣଙ୍କର ସ୍ୱପ୍ନର କୋଟିଏ ଟଙ୍କିଆ ଗାଡ଼ି ବା ଟପ୍‌କାନୀରେ ଛୁଟି କଟାଇବା ଆଦି ସ୍ୱପ୍ନରେ ହିଁ ରହିଯିବ । ପିଲାଙ୍କୁ ଦାମୀ ଘରୋଇ ଆବାସିକ ସ୍କୁଲକୁ କେମିତି ପଠାଇବେ ? ଅନ୍ୟମାନଙ୍କୁ ଦରିଦ୍ର ରଖିପାରିଲେ ଯଥେଷ୍ଟ ଧନ ଓ ସୁବିଧା ସୁଯୋଗ ମିଳେ । ଦାରିଦ୍ର୍ୟେ ବସତି ଲକ୍ଷ୍ମୀ···

୧୩୮·୬୮ ମିଟର ଉଚ୍ଚତାର ସର୍ଦ୍ଦାର ସରୋବର ବନ୍ଧ ତିଆରି ହେବା କଥା ଉଠିବା ବେଳରୁ ହିଁ ସରକାର ବଡ଼ ବନ୍ଧ ତିଆରିର ସମସ୍ତ ପରମ୍ପରା ପାଳନ କରିବାକୁ ଆରମ୍ଭ କଲେ । ପ୍ରଥମେ ପ୍ରକଳ୍ପର ଖର୍ଚ୍ଚ ଅଟକଳ ଏବଂ ମଣିଷ ଓ ପରିବେଶ ଉପରେ ପ୍ରକଳ୍ପର ପ୍ରଭାବ ଆକଳନ ଉପରେ ବହୁତ ଚର୍ଚ୍ଚା ଏବଂ ଗବେଷଣା ହେଲା । ଏ ନାଟକରେ ବିଶ୍ୱ ବ୍ୟାଙ୍କ ମଧ୍ୟ ପୂରା ଦମ୍‌ରେ ଅଂଶଗ୍ରହଣ କଲା । ମଝିରେ ମଝିରେ ବିଶ୍ୱ ବ୍ୟାଙ୍କ ଭ୍ରୂକୁଞ୍ଚନ କରି କ୍ଷୀଣ ସ୍ୱରରେ ଅଧିକ ସୂଚନା ମାଗିଲେ – ହୁଏତ ପ୍ରକଳ୍ପ ପ୍ରଭାବିତ ବ୍ୟକ୍ତି (*ପି·ଏ·ପି· – ପ୍ରୋଜେକ୍‌ଟ ଆଫେକ୍‌ଟେଡ୍‌ ପିପୁଲ*) ମାନଙ୍କର ଥଇଥାନର ପ୍ରଶ୍ନ । *(ଏଭଳି ସଂକ୍ଷିପ୍ତ ନାଁ ସବୁ ଦେବାର ଗୋଟାଏ ଅଲଗା ପ୍ରଭାବ ରହିଛି । ପ୍ରକୃତ ଅର୍ଥକୁ ଲୁଚାଇବାରେ ତାହା ସାହାଯ୍ୟ କରେ, ଆବେଗପୂର୍ଣ୍ଣ ବିଷୟକୁ ନିର୍ଲିପ୍ତ ପରିସଂଖ୍ୟାନରେ ପରିଣତ କରିଦିଏ । ଯେପରି, କିଛି ଦିନ ପରେ ସମସ୍ତେ ଭୁଲି ଯାଆନ୍ତି ଯେ ପି·ଏ·ପି· ମାନେ ହେଉଛନ୍ତି ପ୍ରକୃତରେ ମଣିଷ ।)*

ବିଶ୍ୱ ବ୍ୟାଙ୍କର ନାଟକୀୟ ପ୍ରଶ୍ନର ଉତ୍ତରରେ ସରକାର ଅଳ୍ପ କିଛି ସୂଚନା ବ୍ୟାଙ୍କ ଆଡ଼କୁ ଫିଙ୍ଗି ଦେଲା ଏବଂ ବ୍ୟାଙ୍କ ସେଥିରେ ସନ୍ତୁଷ୍ଟ ହୋଇ ପ୍ରକଳ୍ପ କାମ ଆଗେଇ ନେଲା । ଏସବୁ ବ୍ୟାପାରରେ ଅଲିଖିତ ବୁଝାମଣା ହେଲା ଯେ ପରିବେଶୀୟ, ଆର୍ଥିକ କିମ୍ବା ମାନବୀୟ ମୂଲ୍ୟ ଯାହା ହେଉ ନା କାହିଁକି, କାମ ଆଗେଇବା କଥା, ତେଣୁ ତାହା

ଆଗେଇବ । ଆଉ ଆଗେଇବା ଅନୁସାରେ ତା'ର ସପକ୍ଷରେ ଯୁକ୍ତି ଉଦ୍ଭାବିତ ହୋଇ ହୋଇ ଚାଲିବ । ସେମାନେ ଭଲ ଭାବରେ ଜାଣନ୍ତି ଯେ କେତେ ବର୍ଷ ଧରି କାମ ଆଗେଇବା ପରେ କୌଣସି ନ୍ୟାୟାଳୟ ବା କମିଟି କାମ ବନ୍ଦ କରିଦେଇ ପାରିବ ନାହିଁ । ପ୍ରକଳ୍ପ ଅଧିକାରୀମାନେ ନ୍ୟାୟାଳୟରେ ଯୁକ୍ତି ବାଢ଼ିବେ, "ନ୍ୟାୟମୂର୍ତ୍ତୀ ମହୋଦୟ, ପ୍ରକଳ୍ପର କାମ ଅଟକିବା ଯୋଗୁ ପ୍ରତିଦିନ ଦେଶର କୋଟି କୋଟି ଟଙ୍କା ନଷ୍ଟ ହେଉଛି ।" ସରକାରଙ୍କ କହିବା ଅନୁସାରେ ସର୍ଦ୍ଦାର ସରୋବର ପ୍ରକଳ୍ପ ପାଇଁ ଦେଶରେ ସର୍ବାଧିକ ଗବେଷଣା ଓ ଅଧ୍ୟୟନ ହୋଇଛି । ହେଲେ ଅସଲ କଥା ହେଲା ତଳଭଳି କିଛି ...

ଟ୍ରିବ୍ୟୁନାଲ ରାୟ ଦେଇସାରିଲା ପରେ ଗୁଜୁରାଟ ସରକାର ନିଜ ଭାଗର ପାଣିକୁ ନେଇ ଯୋଜନା ଘୋଷଣା କଲା । ସେହି ଯୋଜନାରେ ଗୁଜୁରାଟର ଶୁଖା ଅଞ୍ଚଳ କଚ୍ଛ କିମ୍ବା ସୌରାଷ୍ଟ୍ରର ଗାଁମାନଙ୍କୁ ପିଇବା ପାଣି ଯୋଗାଇବା ବିଷୟରେ କିଛି ବି କୁହାଯାଇ ନଥିଲା । ପ୍ରକଳ୍ପଟି ଯେତେବେଳେ ରାଜନୈତିକ ବିବାଦ ଘେରକୁ ଆସିଲା, ସେତେବେଳେ ଯାଇ ଗୁଜୁରାଟ ସରକାର ଶୋଷର ଆବେଗଭରା ଶକ୍ତି ଆବିଷ୍କାର କଲା । ହଠାତ କୁହାଗଲା ଯେ ସର୍ଦ୍ଦାର ସରୋବର ପ୍ରକଳ୍ପର ମୂଳ ଲକ୍ଷ ହେଉଛି କଚ୍ଛ ଓ ସୌରାଷ୍ଟ୍ରର ଲକ୍ଷ ଲକ୍ଷ ତୃଷାର୍ତ୍ତଙ୍କ ତଣ୍ଟି ଭିଜାଇବାକୁ ପାଣି ଯୋଗାଇବା । ଅବଶ୍ୟ, ଏକଥା ସତ ଯେ କଚ୍ଛ ଓ ସୌରାଷ୍ଟ୍ରର ନିକଟତର ସାବରମତୀ ଓ ମାହୀ ନଈ ଦୁଇଟିରେ ଆଗରୁ ବନ୍ଧ ପକାଯାଇଛି, କିନ୍ତୁ ସେହି ପାଣି ଅହମଦାବାଦ, ମେହସାନା ଏବଂ ଖେଡ଼ା ଆଦି ସହରମାନଙ୍କୁ ଯୋଗାଇ ଦିଆଯାଉଛି । କଚ୍ଛ ଏବଂ ସୌରାଷ୍ଟ୍ରର ଲୋକେ ଏ ପାଣିରୁ ଟୋପେ ବି ଦେଖିନାହାନ୍ତି । ସରକାରୀ ହିସାବ ଅନୁସାରେ ସର୍ଦ୍ଦାର

ସରୋବରରୁ କେନାଲ ଦ୍ୱାରା ପିଇବା ପାଣି ପାଇବାକୁ ଥିବା ଲୋକସଂଖ୍ୟାର ହିସାବ ନିୟମିତ ଭାବରେ ବଦଳି ଚାଲିଛି । ୧୯୮୩ରେ ତାହା ଥିଲା ୨·୮କୋଟି, ୧୯୮୯ରେ ୩·୨୫ କୋଟି, ୧୯୯୦ରେ ୪ କୋଟି ଏବଂ ୧୯୯୩ରେ ୨·୫କୋଟି ।

ପିଇବା ପାଣି ପହଞ୍ଚିବାକୁ ଥିବା ଗାଁମାନଙ୍କର ସଂଖ୍ୟା ୧୯୭୯ରେ ଥିଲା ଶୂନ, ୧୯୮୦ ଦଶକର ଆରମ୍ଭରେ ଥିଲା ୪,୭୧୯ । ୧୯୯୦ରେ ତାହା ହେଲା ୭,୨୩୪ ଏବଂ ୧୯୯୧ରେ ହେଲା ୮,୨୧୫ । ଏହି ହିସାବ ଉପରେ ପ୍ରଶ୍ନ ହେବାରୁ ସରକାର ସ୍ୱୀକାର କଲେ ଯେ ୧୯୯୧ର ହିସାବରେ ଏପରି ୨୩୬ଟି ଗାଁ ଅନ୍ତର୍ଭୁକ୍ତ ଯେଉଁଠି କେହି ରହନ୍ତି ନାହିଁ (ବେଛପରି ଗାଁ) ।

ପ୍ରକଳ୍ପର ସବୁ ଦିଗ ପ୍ରତି ସରକାରଙ୍କର ପ୍ରତିକ୍ରିୟା ଏହିଭଳି ଦାୟିତ୍ୱହୀନ ଏବଂ ପିଲାଳିଆ । ସତେ ଯେପରି ତାହା ପିଲାଛୁଆଙ୍କ ସାଙ୍ଗରେ ଗୋଟାଏ ଖେଳ । ଏ ପ୍ରକଳ୍ପର ପ୍ରଭାବ ଯେ କୋଟି କୋଟି ଲୋକଙ୍କ ଉପରେ ପଡ଼ିବ, ସେ ବିଷୟ ଆଡ଼କୁ ସରକାରଙ୍କର ଆଦୌ ଧ୍ୟାନ ନାହିଁ ।

୧୯୭୯ର ହିସାବ ଅନୁସାରେ ସର୍ଦ୍ଦାର ସରୋବର ଜଳଭଣ୍ଡାର ଦ୍ୱାରା ୬୦୦୦ରୁ ଅଳ୍ପ କିଛି ଅଧିକ ପରିବାର ବିସ୍ଥାପିତ ହେବାର ଥିଲା । ୧୯୮୭ରେ ଏ ସଂଖ୍ୟା ବଢ଼ିଲା ୧୨,୦୦୦କୁ, ୧୯୯୧ରେ ହେଲା ୨୭,୦୦୦ । ସରକାରୀ ଘୋଷଣା ଅନୁସାରେ ୧୯୯୨ରେ ୪୦,୦୦୦ ପରିବାର ବିସ୍ଥାପିତ ହେବେ । ଆଜିର ହିସାବରେ ଏ ସଂଖ୍ୟା ହେଉଛି ୪୦,୦୦୦ରୁ ୪୧,୫୦୦ ମଝିରେ । କିନ୍ତୁ ଏ ସଂଖ୍ୟାଟି ଉଭଟ । କାରଣ ଏଭଳି ଗୋଟିଏ ପ୍ରକଳ୍ପରେ କେବଳ ଜଳଭଣ୍ଡାର ଦ୍ୱାରା ଲୋକେ ବିସ୍ଥାପିତ ହୁଅନ୍ତି ନାହିଁ । ନର୍ମଦା ବଞ୍ଚାଅ ଆନ୍ଦୋଳନର ହିସାବ ଅନୁସାରେ ଏଥିରେ ପ୍ରାୟ ୮୫,୦୦୦

ପରିବାରର ସମୁଦାୟ ୫ ଲକ୍ଷ ଲୋକ ବିସ୍ଥାପିତ ହେବେ ।

ସରକାରୀ ହିସାବ ଅନୁସାରେ ପ୍ରକଳ୍ପର ଖର୍ଚ୍ଚ ମଧ୍ୟ ଏହାରି ଭିତରେ ୬,୦୦୦ କୋଟି ଟଙ୍କାରୁ ବଢ଼ି ବଢ଼ି ୨୦,୦୦୦ କୋଟି ଟଙ୍କାରେ ପହଞ୍ଚିଛି । ନର୍ମଦା ବଞ୍ଚାଅ ଆନ୍ଦୋଳନର ହିସାବ ଅନୁସାରେ ସମୁଦାୟ ଖର୍ଚ୍ଚ ହେବ ପ୍ରାୟ ୪୦,୦୦୦ କୋଟି ଟଙ୍କା । ଅର୍ଥାତ୍ ଗତ ପଚାଶ ବର୍ଷରେ ସାରା ଦେଶରେ ଜଳସେଚନ କ୍ଷେତ୍ରରେ ହୋଇଥିବା ଖର୍ଚ୍ଚର ଅଧା ।

ସରକାରୀ ଦାବି ଅନୁସାରେ ସର୍ଦ୍ଦାର ସରୋବର ପ୍ରକଳ୍ପରୁ ୧୪୫୦ ମେଗାୱାଟ୍ ବିଜୁଳି ଶକ୍ତି ଉତ୍ପାଦିତ ହେବ । କିନ୍ତୁ ବହୁମୁଖୀ ଜଳବିଦ୍ୟୁତ୍ ପ୍ରକଳ୍ପମାନଙ୍କର ବଡ଼ ଅସୁବିଧା ଏହା ଯେ ତାଙ୍କର ଲକ୍ଷଗୁଡ଼ିକ - ଜଳସେଚନ, ଶକ୍ତି ଉତ୍ପାଦନ, ବନ୍ୟା ନିୟନ୍ତ୍ରଣ ଆଦି - ନିଜ ନିଜର ବିରୋଧ କରନ୍ତି । ଯେଉଁ ପାଣି ଜଳସେଚନ ପାଇଁ ଦରକାର ସେହି ପାଣି ବିଜୁଳି ଶକ୍ତି ଉତ୍ପାଦନ ପାଇଁ ଆବଶ୍ୟକ । ମୌସୁମୀ ବର୍ଷା ସମୟରେ ଆସିବାକୁ ଥିବା ଅଧିକ ପାଣିକୁ ଧରି ରଖିବା ପାଇଁ ତାହା ଆଗରୁ ଜଳଭଣ୍ଡାରକୁ ଖାଲି ରଖିବାକୁ ପଡ଼େ । କିନ୍ତୁ ବର୍ଷା ଆଗରୁ ଜଳଭଣ୍ଡାର ଖାଲି ରଖିସାରିଲା ପରେ ଯଦି ବର୍ଷା ନ ହେଲା ତା'ହେଲେ ଜଳଭଣ୍ଡାର ଖାଲି ହିଁ ପଡ଼ିରହିବ । ନା ପାଣି, ନା ବିଜୁଳି, ନା ଜଳସେଚନ । ଏ ଅବସ୍ଥା ବାଘ, ଛେଳି ଓ ଘାସ ଧରି ଡଙ୍ଗାରେ ନଇ ପାରି ହେଲା ଭଳି ଏକ ସମସ୍ୟାର କଥା ।

ଏହିଭଳି ପରସ୍ପର ବିରୋଧୀ ଲକ୍ଷର ଅନୁଧ୍ୟାନ କରି ବିଶେଷଜ୍ଞମାନେ କୁହନ୍ତି ଯେ ସର୍ଦ୍ଦାର ସରୋବର ପ୍ରକଳ୍ପ ପୂରା ହୋଇ କାର୍ଯ୍ୟକ୍ଷମ ହେଲାବେଳକୁ ସେଥିରୁ ଧାର୍ଯ୍ୟ ଲକ୍ଷର ମାତ୍ର ୩ ଶତାଂଶ ବା ମୋଟରେ ମାତ୍ର ୫୦ ମେଗାୱାଟ୍ ବିଜୁଳିଶକ୍ତି ଉତ୍ପାଦିତ ହେବ କି ନାହିଁ ସନ୍ଦେହ । ମାତ୍ର ୫୦ ମେଗା ୱାଟ । ଏହି ପ୍ରକଳ୍ପର ବ୍ୟାପକ

କେନାଲ ଜାଲ ପାଇଁ ପାଣି ପମ୍ପ କରିବାରେ ପ୍ରଚୁର ବିଦ୍ୟୁତ ଶକ୍ତି ଖର୍ଚ୍ଚହେବ । ଏହି ଖର୍ଚ୍ଚକୁ ହିସାବ କଲେ ଦେଖାଯିବ ଯେ ସର୍ଦ୍ଦାର ସରୋବର ପ୍ରକଳ୍ପରୁ ଯେତିକି ବିଦ୍ୟୁତ ଶକ୍ତି ମିଳିବ ତା'ଠାରୁ ବେଶୀ ସେଥିରେ ଖର୍ଚ୍ଚ ହେବ ।



ଏ ଲଢ଼େଇ ଅନେକ ପୁରୁଣା । ତେଣୁ ଏ ପ୍ରକଳ୍ପକୁ ନେଇ କେହି ମଧ୍ୟ ନିରପେକ୍ଷ ନୁହନ୍ତି । ତା'ହେଲେ ଦାବି ଓ ପ୍ରତିଦାବିର ଏ ଜଙ୍ଗଲରେ ଆପଣ ବାଟ ଖୋଜି ପାଇବେ କେମିତି ? ଆପଣ କେମିତି ଜାଣିବେ କି କାହାର ଅଟକଳ ବେଶି ସତ ? ସତ ଜାଣିବାର ଗୋଟିଏ ବାଟ ହେଲା ଭାରତରେ ବଡ଼ ବନ୍ଧମାନଙ୍କର ଇତିହାସ ଉପରେ ଆଖି ପକାଇବା ।

ନର୍ମଦା ଉପରେ ତିଆରି ପ୍ରଥମ ବନ୍ଧ ହେଲା ଜବଲପୁର ପାଖର ବାର୍ଗୀ ବନ୍ଧ । ବନ୍ଧ ତିଆରି ଶେଷ ହେଲା ୧୯୯୦ରେ । ଏ ବନ୍ଧ ତିଆରିରେ ଅଟକଳଠାରୁ ଦଶଗୁଣ ଅଧିକ ଖର୍ଚ୍ଚ ହେଲା । ଆଉ ବୁଡ଼ି ଅଞ୍ଚଳର ଆକାର ଥିଲା ଇଞ୍ଜିନିୟରମାନଙ୍କର ଅଟକଳ ତୁଳନାରେ ତିନିଗୁଣ ବେଶୀ । ଅଟକଳ ଅନୁସାରେ ୧୦୧ ଗାଁର ୭୦.୦୦୦ ଲୋକ ବିସ୍ଥାପିତ ହେବାର ଥିଲା । କିନ୍ତୁ ଜଳଭଣ୍ଡାରରେ ପାଣି ଭର୍ତ୍ତିହେବା ଆରମ୍ଭ ହେବାରୁ ବୁଡ଼ିଗଲା ୧୬୨ଟି ଗାଁ । ବୁଡ଼ିଗଲା କୌଣସି ଚେତାବନୀ, କୌଣସି ଘୋଷଣା ବିନା । ଏପରିକି ସରକାର ନୂଆକରି ତିଆରି କରିଥିବା କେତେଗୁଡ଼ିଏ ପୁର୍ନବାସ ବସତି ମଧ୍ୟ

ବୁଡ଼ିଗଲା । ଶହ ଶହ ବର୍ଷ ଧରି ନିଜର ଭିଟାମାଟି କରିଥିବା ଅଞ୍ଚଳରୁ ଗାତରେ ପାଣି ପଶୁଥିବା ମୂଷାଙ୍କ ଭଳି ଲୋକମାନଙ୍କୁ ବାହାରି ଯିବାକୁ ପଡ଼ିଲା । ଲୋକମାନେ ଅଳ୍ପ ଯାହା ପାରିଲେ ତାହା ବଞ୍ଚାଇଲେ, କିନ୍ତୁ ଅସହାୟ ଭାବରେ ନିଜର ଘରବାଡ଼ି ସବୁଙ୍କୁ ଭାସିଯିବାର ଦେଖିଲେ । ମୋଟରେ ୧,୧୪,୦୦୦ ଲୋକ ବିସ୍ଥାପିତ ହେଲେ । ଏଥିପାଇଁ ନା କିଛି ପୁର୍ନବାସର ଯୋଜନା ଥିଲା ନା ଥିଲା କିଛି କ୍ଷତିପୂରଣ । ମାତ୍ର ଅଳ୍ପ କିଛି ଲୋକଙ୍କୁ ଭିକ ଭଳି ଟଙ୍କା କେଇଟା ଦିଆଯାଇଥିଲା । ଅନେକଙ୍କୁ ଫଟା ପାହୁଲାଟାଏ ବି ମିଳିନଥିଲା । ବହୁତ କମ୍ ଲୋକଙ୍କୁ ପୁନର୍ବାସ କଲୋନୀରେ ଜାଗା ମିଳିଲା । ସରକାରୀ ପ୍ରଚାର ଅନୁସାରେ ଗୋରଖପୁର ପାଖରେ ଥିବା ପୁର୍ନବାସ କଲୋନୀ ଥିଲା ଏକ 'ଆଦର୍ଶ ଗ୍ରାମ' । ୧୯୯୦ରୁ ୧୯୯୨ ମଧ୍ୟରେ ଏହି ଆଦର୍ଶ ପୁର୍ନବାସ କଲୋନୀରେ ଅନାହାରରେ ମରିଛନ୍ତି ପାଞ୍ଚ ଜଣ । ବାକିତକ ପୁର୍ନବାସୀ ଜଙ୍ଗଲକୁ ଫେରିଯାଇ ବେଆଇନ୍ ଭାବରେ ରହୁଛନ୍ତି । ବାର୍ଗୀ ବନ୍ଧ ଯେତିକି ଜମି ବୁଡ଼ାଇଛି ସେତିକି ଜମି ହିଁ ଜଳସେଚିତ କରୁଛି । ଅର୍ଥାତ୍ ଧାର୍ଯ୍ୟ ଲକ୍ଷର ଶତକଡ଼ା ପାଞ୍ଚ ଭାଗ ମାତ୍ର ।

ଆଉ ଏ କାହାଣୀ କେବଳ ଗୋଟିଏ ବନ୍ଧର ନୁହେଁ । ଅଟକଳ ଅନୁସାରେ ଆନ୍ଧ୍ରପ୍ରଦେଶ ଜଳସେଚନ ଯୋଜନା-୨ର ଯୋଜନା ଅନୁସାରେ ୬୩,୦୦୦ ଲୋକ ବିସ୍ଥାପିତ ହେବାର ଥିଲା । ହେଲେ ପ୍ରକଳ୍ପ ଶେଷହେଲା ବେଳକୁ ଦେଖାଗଲା ଯେ ବିସ୍ଥାପିତ ହୋଇଛନ୍ତି ୧,୫୦,୦୦୦ ଲୋକ । ଗୁଜୁରାଟ ମଧ୍ୟମ ଜଳସେଚନ ଯୋଜନା-୨ ଅଟକଳ କରାଯାଇଥିବା ୬୩,୬୦୦ ଲୋକଙ୍କ ପରିବର୍ତ୍ତେ ୧,୪୦,୦୦୦ ଲୋକଙ୍କୁ ବିସ୍ଥାପିତ କରିଛି । କର୍ଣ୍ଣାଟକର ଉପରକୃଷ୍ଣା ପ୍ରକଳ୍ପରେ ପ୍ରଥମେ ୨୦,୦୦୦ ଲୋକ ବିସ୍ଥାପିତ ହେବାର ଥିଲା ।

ହେଲେ ଏବେ ସେ ସଂଖ୍ୟା ବଢ଼ି ବଢ଼ି ୨,୪୦,୦୦୦ ଛୁଇଁଲାଣି ।

ଆଉ ଏସବୁ ସଖ୍ୟା ଉଦ୍ଧୃତ ହୋଇଛି ବିଶ୍ୱ ବ୍ୟାଙ୍କର ରିପୋର୍ଟରୁ, ନର୍ମଦା ବଞ୍ଚାଅ ଆନ୍ଦୋଳନ ସୂତ୍ରରୁ ନୁହେଁ । ଏହି ସବୁ ପରିସଂଖ୍ୟାନ ଦୃଷ୍ଟିରୁ ଆମର ୩.୩ କୋଟିର ରକ୍ଷଣଶୀଳ ହିସାବ ବଢ଼ି ବଢ଼ି କେତେ ହେବ ଭାବନ୍ତୁ ।

ସର୍ଦ୍ଦାର ସରୋବର ବନ୍ଧର କାମ ଅନ୍ଧ ବହୁତେ ଆରମ୍ଭ ହେଲାଣି ୧୯୬୧ରୁ । ହେଲେ ଅସଲ କାମ ଜୋରସୋରରେ ଆରମ୍ଭ ହୋଇଛି ୧୯୮୮ରୁ । ସେ ସମୟରେ ସରକାର, ବିଶ୍ୱ ବ୍ୟାଙ୍କ କିମ୍ବା ଅନ୍ୟ କେହି ମେଧା ପାଟକର୍ ବୋଲି ଜଣେ ନାରୀର ଅସ୍ତିତ୍ୱ ବିଷୟରେ ସଚେତନ ନଥିଲେ । ସେଠିକାର ଲୋକଙ୍କ ଉପରେ ସରକାରୀ ଯୋଜନାର ପ୍ରଭାବ ବିଷୟରେ ସେମାନେ କିଛି ଜାଣନ୍ତି କି ନାହିଁ ତାହା ଲୋକଙ୍କୁ ପଚାରି ପଚାରି ସେ ଗାଁ ଗାଁରେ ଘୁରି ବୁଲୁଥିଲେ । ବୁଡ଼ି ଅଞ୍ଚଳରେ ସେତେବେଳେ ଘୁରି ବୁଲୁଥିଲା ବେଳେ ବନ୍ଧକୁ ବିରୋଧ କରିବା ବିଷୟରେ କୌଣସି ଯୋଜନା ତାଙ୍କ ମୁଣ୍ଡରେ ନଥିଲା । ତାଙ୍କର ମୂଳ ଚିନ୍ତା ଥିଲା ଲୋକଙ୍କର ନ୍ୟାୟସଙ୍ଗତ ପୁର୍ନବାସ ଦିଗରେ । କିନ୍ତୁ କାମ କରୁ କରୁ ସେ ଅନୁଭବ କରିବାକୁ ଆରମ୍ଭ କଲେ ଯେ ସରକାରଙ୍କର ଉଦ୍ଦେଶ୍ୟ କିଛି ଠିକ୍ ନୁହେଁ । ୧୯୮୬ ବେଳକୁ ପୁର୍ନବାସର ସମସ୍ୟାକୁ ନେଇ ଏବଂ ସରକାରଙ୍କ ପ୍ରଚାରକୁ ପ୍ରଶ୍ନ କରି ପ୍ରତି ରାଜ୍ୟରେ ଗଣ ଆନ୍ଦୋଳନମାନ ଗଢ଼ି ଉଠିଥିଲା । ଏହାର କିଛି ବର୍ଷ ପରେ ଯାଇ ଏହି ପ୍ରକଳ୍ପର ମାରାତ୍ମକ ସାମଗ୍ରିକ ପ୍ରଭାବ - ବୁଡ଼ି ଅଞ୍ଚଳର ଲୋକଙ୍କ ଉପରେ ଏବଂ ବନ୍ଧର ଲାଭ ପାଇବାକୁ ଥିବା ଲୋକଙ୍କ ପାଇଁ ବନ୍ଧର ପ୍ରଭାବ - ଲୋକ ଲୋଚନକୁ ଆସିବାକୁ ଆରମ୍ଭ କଲା । ନର୍ମଦା ଉପତ୍ୟକା ବିକାଶ ପ୍ରକଳ୍ପ ଯେ ଭାରତର ସବୁଠାରୁ ବଡ଼ ଯୋଜନାବଦ୍ଧ ପରିବେଶୀୟ

ଦୁର୍ବିପାକ ତାହା ସୃଷ୍ଟି ହେବାରେ ଲାଗିଲା । ଅଲଗା ଅଲଗା ରାଜ୍ୟରେ ଚାଲୁଥିବା ଗଣ ଆନ୍ଦୋଳନ ସବୁ ମିଶିଗଲେ ଏବଂ ତହିଁରୁ ଜନ୍ମ ନେଲା ଅସାମାନ୍ୟ *ନର୍ମଦା ବଚାଓ (ବଞ୍ଚାଅ) ଆନ୍ଦୋଳନ* ବା **ନ.ବ.ଆ.** ।

୧୯୮୮ ମସିହାରେ ନ.ବ.ଆ. ବିଧିବଦ୍ଧ ଭାବରେ ଡାକଦେଲା ଯେ ନର୍ମଦା ଉପତ୍ୟକା ବିକାଶ ପ୍ରକଳ୍ପର ସବୁ କାମ ବନ୍ଦ କରାଯାଉ । ଲୋକମାନେ ଘୋଷଣା କଲେ ଯେ ସେମାନେ ବୁଡ଼ି ମରିବେ ପଛେ ତାଙ୍କର ଭିଟାମାଟି ଛାଡ଼ିବେ ନାହିଁ । ଦୁଇବର୍ଷ ଭିତରେ ଆନ୍ଦୋଳନ ଶକ୍ତି ସଂଗ୍ରହ କରି ବଢ଼ିଚାଲିଲା । ଏଥିରେ ଅଧିକରୁ ଅଧିକ ଲୋକ ଯୋଗ ଦେଲେ ଏବଂ ଅନ୍ୟ ଗଣ ଆନ୍ଦୋଳନମାନଙ୍କର ସହଯୋଗ ମଧ୍ୟ ତାହାକୁ ମିଳିଲା । ୧୯୮୯ର ସେପ୍‌ଟେମ୍ବର ମାସରେ ନର୍ମଦା ଉପତ୍ୟକାର ହରସୁଦ୍‌ଠାରେ ସାରା ଭାରତରୁ ଆସିଥିବା ୫୦,୦୦୦ ଲୋକ 'ବିନାଶକାରୀ ବିକାଶ' ବିରୋଧରେ ଲଢ଼େଇ କରିବାର ଶପଥ ନେଲେ । ବନ୍ଧ ଓ ତା'ର ଆଖପାଖ ଅଞ୍ଚଳରେ ଆଗରୁ ଭାରତ ସରକାରଙ୍କର *ଅଫିସିଆଲ୍ ସିକ୍ରେଟ୍‌ସ୍ ଆକ୍‌ଟ* ଲାଗୁ ହୋଇଥିଲା । ଏବେ ସରକାର ବନ୍ଧର ଚାରିପାଖେ ୧୪୪ ଧାରା ଜାରୀ କରିଦେଲେ ଏବଂ ଏହା ବଳରେ ପାଞ୍ଚ ଜଣରୁ ଅଧିକ ଲୋକ ଏକାଠି ହେବା ବେଆଇନ ହେଲା । ପୂରା ଅଞ୍ଚଳ ଗୋଟିଏ ପୁଲିସ୍ ଛାଉଣୀ ପାଲଟି ଗଲା । ହେଲେ ଏସବୁ ସତ୍ତ୍ୱେ ସେପ୍‌ଟେମ୍ବର ୨୮, ୧୯୯୦ରେ, ପ୍ରଥମ ବଡ଼ ଜନ ସମାବେଶର ଏକ ବର୍ଷ ପରେ, ହଜାର ହଜାର ଲୋକ ଚାଲି ଚାଲି ଆସି ବା ଡଙ୍ଗାରେ ନଈ ପାର ହୋଇ ମଧ୍ୟପ୍ରଦେଶର ବଡ୍‌ୱାନୀ ବୋଲି ଗୋଟିଏ ପ୍ରାୟ ଅଜଣା ଛୋଟ ଜାଗାରେ ଏକାଠି ହେଲେ ଏବଂ ତାଙ୍କର '*ବୁଡ଼ିବୁ ପଛେ ହଟିବୁ ନାହିଁ*' ଶପଥକୁ ଦୋହରାଇଲେ । ବନ୍ଧ ପ୍ରକଳ୍ପ ବିରୋଧରେ ଲୋକମାନଙ୍କର

ଏହି ଆନ୍ଦୋଳନର ଖବର ଖୁବ୍ କମ ସମୟ ଭିତରେ ଅନ୍ୟ ଦେଶମାନଙ୍କୁ ବ୍ୟାପିଗଲା । ଧରତୀର ସଖା (*ଫ୍ରେଣ୍ଡ୍ସ୍ ଅଫ୍ ଦି ଆର୍ଥ*)ର ଜାପାନ ଶାଖା ଏହି ପ୍ରକଳ୍ପ ବିରୁଦ୍ଧରେ ଜାପାନରେ ପ୍ରଚାର ଆରମ୍ଭ କଲେ । ଏହା ଫଳରେ ଜାପାନ ସରକାର ବନ୍ଧ ପାଇଁ ଚୁକ୍ତି କରିଥିବା ୨,୭୦୦ କୋଟି ୟେନ୍‌ର ଋଣ ବାତିଲ କରିବାକୁ ବାଧ୍ୟ ହେଲେ । କିନ୍ତୁ ଜାପାନୀ କମ୍ପାନୀଠାରୁ ଟର୍‌ବାଇନ କିଣିବାର ଚୁକ୍ତି ଏବେ ମଧ୍ୟ ବଳବତ୍ତର ଅଛି । ଥରେ ଜାପାନ ପଛେଇ ଗଲାପରେ ବିଶ୍ୱ ବ୍ୟାଙ୍କ ଉପରେ ଅନ୍ୟ ପରିବେଶ ସୁରକ୍ଷା ଗୋଷ୍ଠୀମାନଙ୍କର ଚାପ ଅଧିକରୁ ଅଧିକ ପଡ଼ିବାକୁ ଆରମ୍ଭ କଲା ।

କିନ୍ତୁ ଏହାର ସବୁଠାରୁ ବଡ଼ ଫଳ ହେଲା ଏହା ଯେ ନର୍ମଦା ଉପତ୍ୟକାରେ ସରକାରୀ ଅତ୍ୟାଚାର ବଢ଼ିବାରେ ଲାଗିଲା । ଜଣେ ପ୍ରାକ୍ତନ ମନ୍ତ୍ରୀଙ୍କ ମତରେ ସମସ୍ୟାର ସମାଧାନ ହେଉଛି ଉପତ୍ୟକାକୁ ଖାକିରେ (ପୁଲିସମାନଙ୍କ ଦ୍ୱାରା) ଭର୍ତ୍ତି କରିଦିଅ ।

ଡିସେମ୍ବର ୨୫, ୧୯୯୦ରେ ଏକ ଅଭିନବ ଯାତ୍ରା ଆରମ୍ଭ ହେଲା । ନଦୀ ପାଇଁ ନିଜର ଜୀବନ ଦେବାକୁ ପଣ କରିଥିବା ସାତଜଣ ଆତ୍ମୋତ୍ସର୍ଗୀ ଆନ୍ଦୋଳନକାରୀଙ୍କ ସହିତ ୬୦୦୦ ଲୋକ ନିଜର ବିଛଣା ଓ ଜିନିଷପତ୍ର ସହିତ ୧୦୦ କିଲୋମିଟର ରାସ୍ତାର ଏକ ପଦଯାତ୍ରା ଆରମ୍ଭ କଲେ । ସେମାନଙ୍କୁ ଗୁଜୁରାଟ ସୀମାର ଫେରକୁଆଠାରେ ସଶସ୍ତ୍ର ପୁଲିସ୍ ଓ ବରୋଦାର ଶହ ଶହ ଲୋକ ଅଟକାଇଲେ । ବରୋଦାର ଏହି ଲୋକମାନଙ୍କ ମଧ୍ୟରୁ ଅନେକ ଥିଲେ ଭଡ଼ାଟିଆ, ଆଉ କେତେଜଣ ଯିଏ ହୁଏତ ସତରେ ବିଶ୍ୱାସ କରୁଥିଲେ ଯେ ସର୍ଦ୍ଦାର ସରୋବର ହେଲା ଗୁଜୁରାଟର ଜୀବନରେଖା । ଏହା ଥିଲା ଏକ ଆଗ୍ରହଜନକ ମୁକାବିଲା । ମଧ୍ୟବିତ୍ତ ସହରୀ ଭାରତ ବିରୁଦ୍ଧରେ ଗ୍ରାମୀଣ, ମୂଳତଃ ଏକ

ଆଦିବାସୀ, ସେନା । ପଦଯାତ୍ରା କରୁଥିବା ଲୋକଙ୍କର ଦାବି ଥିଲା ମାତ୍ର ଗୋଟିଏ । ସେମାନେ ସୀମା ପାର ହୋଇ ବନ୍ଧ ପାଇଁ ଚିହ୍ନିତ ଜାଗା ପର୍ଯ୍ୟନ୍ତ ଚାଲି ଚାଲି ଯିବାର ଅନୁମତି ଚାହୁଁଥିଲେ । କିନ୍ତୁ ପୁଲିସ ତାଙ୍କୁ ଅନୁମତି ଦେଲାନାହିଁ । ତାଙ୍କ ଆନ୍ଦୋଳନ ଯେ ଅହିଂସ, ସେ କଥା ସ୍ପଷ୍ଟ କରିଦେବା ପାଇଁ ସବୁ ଆନ୍ଦୋଳନକାରୀ ନିଜ ନିଜର ହାତ ବାନ୍ଧି ଦେଇଥିଲେ । ସେମାନେ ଯେତେବେଳେ ଅନୁମତି ବିନା ସୀମା ଟପିବାକୁ ଆରମ୍ଭ କଲେ ସେତେବେଳେ ପୁଲିସ ସେମାନଙ୍କୁ ନିର୍ଦ୍ଦୟ ଭାବରେ ବାଡ଼େଇଲା, ଗିରଫ କରି ଟ୍ରକରେ ବୋହିନେଇ କେତେ ମାଇଲ ଦୂରରେ ଅପନ୍ତରା ଜାଗାରେ ଫୋପାଡ଼ି ଦେଇ ଆସିଲା । ସେମାନେ ସୀମାକୁ ପୁଣି ଫେରି ଆସିଲେ ଏବଂ ଏ ବ୍ୟାପାର ପୁଣି ଆଉଥରେ ମୂଳରୁ ଆରମ୍ଭ ହେଲା ।

ଏ ବିରୋଧ ଦୁଇ ସପ୍ତାହ ପର୍ଯ୍ୟନ୍ତ ଚାଲିଲା । ଶେଷକୁ ଜାନୁଆରୀ ୭, ୧୯୯୧ରେ ଆତ୍ମୋତ୍ସର୍ଗୀ ଦଳର ସଦସ୍ୟମାନେ ଆମରଣ ଅନଶନ ଘୋଷଣା କଲେ । ଉତ୍ତେଜନା ଧୀରେ ଧୀରେ ବଢ଼ି ବିପଦଜନକ ସ୍ତରରେ ପହଞ୍ଚିବାକୁ ଆରମ୍ଭ କଲା । ଭାରତୀୟ ଓ ଆନ୍ତର୍ଜାତୀୟ ଖବରକାଗଜ, ଟିଭି କ୍ୟାମେରା ଦଳ, ଡକ୍ୟୁମେଣ୍ଟାରୀ ଫିଲ୍ମ ନିର୍ମାତା ସମସ୍ତେ ବହୁ ସଂଖ୍ୟାରେ ଏଠାରେ ଉପସ୍ଥିତ ଥିଲେ । ଖବରକାଗଜରେ ରିପୋର୍ଟ ପ୍ରାୟ ପ୍ରତିଦିନ ବାହାରିଲା । ପରିବେଶ କର୍ମୀମାନେ ୱାଶିଙ୍ଗଟନ୍ ଉପରେ ଚାପ ବଢ଼ାଇଦେଲେ । ଗଣମାଧ୍ୟମର ଏ ଆକ୍ରମଣ ସମ୍ଭାଳି ନପାରି ବିଶ୍ୱ ବ୍ୟାଙ୍କ ଘୋଷଣା କଲା ଯେ ସେମାନେ ସର୍ଦ୍ଦାର ସରୋବର ପ୍ରକଳ୍ପମାନଙ୍କର ଏକ ସ୍ୱାଧୀନ ସମୀକ୍ଷା କରାଇବେ । ଏ ଘୋଷଣା ବିଶ୍ୱ ବ୍ୟାଙ୍କର ଇତିହାସରେ ଥିଲା ଅଭୂତପୂର୍ବ ।

ଉପତ୍ୟକାରେ ଏ ଖବର ପହଞ୍ଚିଲା ପରେ ଆନ୍ଦୋଳନକାରୀମାନେ

ଏହାକୁ ସହଜରେ ବିଶ୍ୱାସ କଲେ ନାହିଁ । କାରଣ ବିଶ୍ୱ ବ୍ୟାଙ୍କ 'ବଡ଼ ମାୟାବୀ ଜୀବ ନୁହେଁ କାହାରି' । ତଥାପି ଏକ ସ୍ୱାଧୀନ ସମୀକ୍ଷା ମଧ୍ୟ ଏକ ପ୍ରକାରର ବିଜୟ ଥିଲା । ଏହା ଭିତରେ ୨୨ ଦିନ ପରେ ଅନଶନକାରୀଙ୍କ ଅବସ୍ଥା ଖୁବ୍ ଖରାପ ହୋଇଆସୁଥିଲା । ତେଣୁ ତାଙ୍କର ସାଥୀମାନେ ଅନଶନ ଭାଙ୍ଗିବା ପାଇଁ ତାଙ୍କୁ ବାଧ୍ୟ କଲେ । ଶେଷକୁ ଜାନୁଆରୀ ୨୮ରେ ସେମାନେ ଅନଶନ ଭାଙ୍ଗିଲେ । ପୂରା ଦଳ 'ହମାରେ ଗାଁଓ ମେ ହମାରା ରାଜ୍' (ଆମ ଗାଁରେ ଆମ ଶାସନ) ଚିଲ୍ଲାଇ ଚିଲ୍ଲାଇ ନିଜ ନିଜ ଘରକୁ ଫେରିଗଲା ।

ଦୁନିଆ ସାରା ଏପରି ଆଉ ଏକ ସେନା କେବେ ନଥିଲା । ଚୀନ (ଚେୟାରମ୍ୟାନ ମାଓଙ୍କର ୭୭ତମ ଜନ୍ମଦିନର ଉପହାର ଥିଲା ଏକ ନଦୀବନ୍ଧ), ବ୍ରାଜିଲ୍, ମାଲେସିଆ, ଗୁଏଟମାଲା କିମ୍ବା ପାରାଗୁଏ ଭଳି ଅନ୍ୟ ସବୁ ଦେଶରେ ବିଦ୍ରୋହ ପ୍ରାୟ ଆରମ୍ଭ ହେବା ଆଗରୁ ତାହାକୁ ନିଶ୍ଚିହ୍ନ କରାଯାଇଛି । କିନ୍ତୁ ଭାରତରେ ଏ ବିଦ୍ରୋହର ଅନ୍ତ ନାହିଁ । ହଁ, ଆମ ରାଷ୍ଟ୍ର ବ୍ୟବସ୍ଥା ମଧ୍ୟ ଏଥିପାଇଁ ବାହାବା ନେବାକୁ ଚେଷ୍ଟାକରେ । ଏହି ଆନ୍ଦୋଳନକୁ ମୂଳପୋଛ ନକରି, ବଞ୍ଚିବାକୁ ଦେଇ, ଆମର ରାଷ୍ଟ୍ର ବୋଧହୁଏ ଚାହେଁ ଯେ ଆମେ ତାହା ପାଖରେ କୃତଜ୍ଞ ରହିବା କଥା । ଏପରି ଅନ୍ତର୍ବିରୋଧ କ'ଣ ଏକ ସୁସ୍ଥ ଗଣତନ୍ତ୍ରର ଚିହ୍ନ ନୁହେଁ କି, ଯେଉଁଠି ଭିନ୍ନ ଭିନ୍ନ ମତ ଥିବାରୁ ରାଷ୍ଟ୍ରକୁ ହସ୍ତକ୍ଷେପ କରିବାକୁ ପଡୁଛି ?

ଏସବୁ ଜିନିଷକୁ ଦେଖିବାର ଏହା ଗୋଟାଏ ବାଟ ନିଶ୍ଚୟ । (ତା'ହେଲେ ମୁଁ କ'ଣ କରିବି ? ହାତ ଯୋଡ଼ି କହିବି, ମୋତେ ସବୁ ଲେଖିବାକୁ ଦେଇଥିବା ପାଇଁ ଧନ୍ୟବାଦ, ଧନ୍ୟବାଦ, ଧନ୍ୟବାଦ !)

ପ୍ରତିବାଦର ସ୍ୱର ଉତ୍ତୋଳନ କରିବାର ଅଧିକାର ଆମର ରହିଛି ଏବଂ ଆମେ ଏହି ପ୍ରତିବାଦ କରୁଛୁ । ଏଥିପାଇଁ ଆମର ରାଷ୍ଟ୍ରକୁ

ଧନ୍ୟବାଦ ଦେବାର କିଛି ନାହିଁ । ଆମେ ଧନ୍ୟବାଦ ଦେବା କଥା ନିଜକୁ । କାରଣ ଏ ଅଧିକାରଗୁଡ଼ିକ ପାଇଁ ଆମେ ଆମର ଦାବି ସାବ୍ୟସ୍ତ କରୁଛୁ ଏବଂ ଏହି ଅଧିକାରକୁ ଛାଡ଼ିଦେବାର ବିରୋଧ ଆମେ କରିଛୁ । ଯଦି ଆମେ ଗୋଟିଏ ଜାତି ଭାବରେ କୌଣସି ଗୋଟିଏ ଜିନିଷକୁ ନେଇ ଗର୍ବ କରିପାରିବା, ତା'ହେଲା ଆମର ପ୍ରତିରୋଧର, ପ୍ରତିବାଦର ପଣ ।

ନର୍ମଦା ଉପତ୍ୟକାର ଆନ୍ଦୋଳନ ବଞ୍ଚିଛି । କିନ୍ତୁ ରାଷ୍ଟ୍ରର ଦୟା ଯୋଗୁଁ ନୁହେଁ । ବଞ୍ଚିଛି ରାଷ୍ଟ୍ରର ସମସ୍ତ ଅତ୍ୟାଚାର ସତ୍ତ୍ୱେ । ଭାରତୀୟ ରାଷ୍ଟ୍ର ବିଭିନ୍ନ କୁଟିଳ ଉପାୟରେ ଯୁଦ୍ଧ କରେ । ଉପର ଠାଉରିଆ ବଦାନ୍ୟତା ତ ଗୋଟାଏ ଉପାୟ । ଆଉ ଗୋଟାଏ ଉପାୟ ହେଲା ଦୀର୍ଘ ଦିନ ଧରି ଅପେକ୍ଷା କରିପାରିବାର ସାମର୍ଥ୍ୟ । ସବୁ ବିରୋଧକୁ ରାଷ୍ଟ୍ର ଆଖି କାନ ବନ୍ଦ କରି ସହିଯାଏ । ଖାଲି ସମୟ ଗଡ଼ିଗଲେ ତ ଗଲା । ରାଷ୍ଟ୍ର କ'ଣ ହାଲିଆ ହୁଏ? ହେଲେ ଲୋକେ ହାଲିଆ ହୋଇଯାନ୍ତି । ରାଷ୍ଟ୍ର ହାଲିଆ ହୁଏ ନାହିଁ, ବୁଢ଼ା ହୁଏ ନାହିଁ, କେବେ ବିଶ୍ରାମ ଦରକାର କରେନାହିଁ । ରାଷ୍ଟ୍ର ଏକ ଅନନ୍ତ ପାଳି ଦୌଡ଼ରେ ଚାଲିଥାଏ ।

କିନ୍ତୁ ଲଢୁଥିବା ମଣିଷ ହାଲିଆ ହୁଏ, ରୋଗରେ ପଡ଼େ । ତା'ର ବାର୍ଦ୍ଧକ୍ୟ ଆସେ, ଯୁବକମାନଙ୍କର ମଧ୍ୟ ଅକାଳ ବାର୍ଦ୍ଧକ୍ୟ ଆସିଯାଏ । ଟ୍ରିବ୍ୟୁନାଲ୍‌ର ରାୟର ୨୦ ବର୍ଷ ବିତିଗଲାଣି । ବୁଡ଼ି ଅଞ୍ଚଳର ଲୋକେ ଏହି କୋଡ଼ିଏ ବର୍ଷ ହେଲା ପ୍ରତି ମୁହୂର୍ତ୍ତରେ ବିସ୍ଥାପନର ଭୟ ସହିତ ବଞ୍ଚିଛନ୍ତି । ୨୦ ବର୍ଷ ହେଲା ଅଧିକାଂଶ ଅଞ୍ଚଳରେ କିଛି ବି ଉନ୍ନୟନ ମୂଳକ କାମ ହୋଇନାହିଁ । ରାସ୍ତା ନାହିଁ, ସ୍କୁଲ ନାହିଁ, କୂଅ ନାହିଁ, ସ୍ୱାସ୍ଥ୍ୟ ସେବା ନାହିଁ । ବୁଡ଼ି ଅଞ୍ଚଳ ଭାବରେ ଏହା ତା'ର କୁଖ୍ୟାତିର ବୋଝ ବୋହି ଚାଲିଛି । ଏହା ଫଳରେ ସେହି ଅଞ୍ଚଳଗୁଡିକ ବୃହତ୍ତର

ସମାଜଠାରୁ ଛାଡ଼ ବାଡ଼ ହୋଇ ରହିଛନ୍ତି । ଏଠାକୁ କେହି ବିବାହ ପ୍ରସ୍ତାବ ପଠାନ୍ତି ନାହିଁ ବା ସେଠିକାର ଜମିର କିଣାବିକା କେହି କରନ୍ତି ନାହିଁ । ତାଙ୍କ ଅବସ୍ଥା ଜାପାନର ପରମାଣୁ ବୋମାର ବିଭୀଷିକା ଭୋଗିଥିବା ହିରୋସୀମା ନାଗାସାକିର *ହିବାକୁଶା* ଓ ତାଙ୍କର ବଂଶଧରଙ୍କ ଅବସ୍ଥା ପରି । ଆଧୁନିକ ଉନ୍ନୟନର ଫଳ ଯେବେ ବି ଏ ଅଞ୍ଚଳରେ ପହଞ୍ଚିଛି, ତାହା ଆସିଛି ଏକ ମାରାତ୍ମକ ଭବିଷ୍ୟତର ଇଙ୍ଗିତ ନେଇ । ରାସ୍ତା ଆଣିଲା ସର୍ଭେ କଲାବାଲାଙ୍କୁ । ସର୍ଭେ କଲାବାଲାଙ୍କ ସହିତ ଆସିଲେ ଟ୍ରକ୍ । ଟ୍ରକ ସହିତ ଆସିଲେ ସଶସ୍ତ୍ର ପୁଲିସ । ପୁଲିସ ସହିତ ଆସିଲା ଲାଠିମାଡ଼, ଗୁଳି, ବେଆଇନ ଗିରଫଦାରୀ, ଧର୍ଷଣ ଏବଂ ହତ୍ୟାକାଣ୍ଡ । ଆଧୁନିକ ବିକାଶର ଯେଉଁ ଏକମାତ୍ର ଭଲ ଫଳ ତାଙ୍କ ପାଖରେ ପହଞ୍ଚିଛି, ତାହା ଆସିଛି ଅପ୍ରତ୍ୟାଶିତ ଭାବରେ । ତାହା ହେଉଛି ସ୍ୱର ଉଠାଇବା ପାଇଁ ଏବଂ ତାଙ୍କ କଥା ଶୁଣାଯାଉ ବୋଲି ଦାବି କରିବାର ଅଧିକାର । କିନ୍ତୁ ସେମାନେ ଏବେ ୨୦ ବର୍ଷ ଧରି ଲଢ଼ି ସାରିଲେଣି । ଆଉ କେତେ ଦିନ ପାଇଁ ସେମାନେ ତିଷ୍ଠି ରହି ପାରିବେ ?

ନର୍ମଦା ଉପତ୍ୟକାରେ ଲୋକେ ଲଢ଼ି ଲଢ଼ି ହାଲିଆ ହୋଇଗଲେଣି । ବାହାରର ଲୋକଙ୍କ ପାଇଁ ସେ ଲଢ଼େଇ ଆଉ ଫେସନ୍‌ର କଥା ନୁହେଁ । ଫେସନ୍ ତ ପୁଣି ବଦଳେ । ବିଶ୍ୱ ବ୍ୟାଙ୍କ ପରି ଆନ୍ତର୍ଜାତୀୟ କ୍ୟାମେରା ଦଳ ଆଉ ସମ୍ବାଦଦାତାମାନେ ନୂଆ ଜାଗାରେ ଖବର ତଲାସରେ ଚାଲିଗଲେଣି । ଯଥେଷ୍ଟ ଡକ୍ୟୁମେଣ୍ଟାରୀ ଚିତ୍ର ତିଆରି ହୋଇ ଦେଖା ସରିଲାଣି । ଲୋକେ ଗୋଟାଏ ଜିନିଷ ପାଇଁ ଆଉ କେତେ ସମ୍ବେଦନା ଦେଖାଇବେ ? ତା' ବି କମି ଆସିଲାଣି । କିନ୍ତୁ ବନ୍ଧ ତିଆରି ଚାଲିଛି । ତା'ର ଉଚ୍ଚତା ବଢ଼ି ବଢ଼ି ଚାଲିଛି ।

ବର୍ତ୍ତମାନ କିନ୍ତୁ ଏ ସେନାର ନୂଆ ରକ୍ତ ବେଶୀ ଦରକାର । ତାହା ଆବଶ୍ୟକ କରେ ନୂଆ ଆନ୍ଦୋଳନକାରୀ, ନୂଆ ସମର୍ଥକ । ଆମେ ଯଦି ଏ ଆନ୍ଦୋଳନକୁ ମରିବାକୁ ଛାଡ଼ିଦେଉ, ଯଦି ଆମେ ଏ ଆନ୍ଦୋଳନକୁ ଚପାଇ ଦେବାର ବିରୋଧ ନକରୁ, ଦଣ୍ଡ ଭୋଗିବା ପାଇଁ ଲୋକମାନଙ୍କୁ ଛାଡ଼ିଦେଉ, ତା'ହେଲେ ଆମେ ସମସ୍ତେ ଆମର ସବୁଠାରୁ ମୂଲ୍ୟବାନ ସମ୍ପଦ ହରାଇ ବସିବା । ସେହି ଅମୂଲ୍ୟ ଜିନିଷଟି ହେଉଛି ଆମର ମନୋବଳ, ଅନ୍ତତଃ ତା'ର ଯେତିକି ଅଂଶ ଏବେ ବଞ୍ଚି ରହିଛି ।

ସାମ୍ପ୍ରତିକ ଘଟଣା ଦ୍ୱାରା ବିଚଳିତ ହେଉଥିବା କେତେଜଣ ଋଷିମୁନି ହୁଏତ କହିବେ ଯେ ଭାରତର ଅନ୍ତ ହେବ ନାହିଁ । କିନ୍ତୁ ଭାରତ କ'ଣ ତା'ର ଲୋକଙ୍କଠାରୁ ବେଶି ଗୁରୁତ୍ୱପୂର୍ଣ୍ଣ, ଅଧିକ ମୂଲ୍ୟବାନ ?

ପୁରୁଣା ନାଜିବାଦୀମାନେ ନିଜକୁ ଏମିତି ମାରାତ୍ମକ ତର୍କ ଦ୍ୱାରା ବୁଝାଉଥିବେ ନିଶ୍ଚୟ ।

ନର୍ମଦା ଉପତ୍ୟକା ପାଇଁ ହେଉଥିବା ଆନ୍ଦୋଳନ କୋଉ ଗୋଟାଏ ସୁଦୂର ମୁଲକର ବିଦେଶୀ ଲଢ଼େଇ ନୁହେଁ, ଗୋଟାଏ ଆଦିବାସୀ ଯୁଦ୍ଧ ନୁହେଁ, ଗୋଟାଏ ଗାଉଁଲି ଲଢ଼େଇ ନୁହେଁ । ଏପରିକି ଏହା କେବଳ ଏକ ଭାରତୀୟ ଯୁଦ୍ଧ ମଧ୍ୟ ନୁହେଁ । ଏ ଲଢ଼େଇ ହେଉଛି ସମଗ୍ର ପୃଥିବୀର ପାହାଡ଼, ଜଙ୍ଗଲ, ନଈମାନଙ୍କ ପାଇଁ । ଏ ଲଢ଼େଇ ପାଇଁ ସାରା ପୃଥିବୀରୁ ଅନେକ ପ୍ରକାରର ଯୋଦ୍ଧା ଦରକାର । ସମସ୍ତଙ୍କୁ ଏ ଆନ୍ଦୋଳନ ସମ୍ମାନ ଜଣାଇବ, ସ୍ୱାଗତ କରିବ । ଡାକ୍ତର, ଶିକ୍ଷକ, ବିଚାରପତି, ସାମ୍ବାଦିକ, ଛାତ୍ର, ଖେଳାଳୀ, ଶିଳ୍ପୀ, ଅଭିନେତା, ଗାୟକ, ପ୍ରେମିକ ··· । ସମସ୍ତଙ୍କ ପାଇଁ ଦ୍ୱାର ଖୋଲା ରହିଛି,

ଆସନ୍ତୁ ! ଏହି ଆନ୍ଦୋଳନରେ ମିଶି ଯାଆନ୍ତୁ ।



ସେ ଯାହା ହେଉ, ଆସନ୍ତୁ ଆମ କାହାଣୀକୁ ଫେରିଯିବା ।

ଜୁନ୍ ୧୯୯୧ରେ ବିଶ୍ୱବ୍ୟାଙ୍କ ବ୍ରାଡଫୋର୍ଡ ମୋର୍ଶଙ୍କୁ ପ୍ରକଳ୍ପର ସ୍ୱାଧୀନ ସମୀକ୍ଷା କରିବା ପାଇଁ ନିଯୁକ୍ତ କଲା । ସେ ମହାଶୟ ଆଗରୁ ଜାତିସଂଘ ଉନ୍ନୟନ ଯୋଜନାମାନଙ୍କର ମୁଖ୍ୟ ଥିଲେ । ପ୍ରକଳ୍ପର ଏକ ସାମଗ୍ରିକ ସମୀକ୍ଷା କରିବାର ଦାୟିତ୍ୱ ତାଙ୍କୁ ଦିଆଗଲା । ତାଙ୍କୁ ଏ ପ୍ରତିଶୃତି ମଧ୍ୟ ଦିଆଗଲା ଯେ ବ୍ୟାଙ୍କର ଗୁପ୍ତ ଦସ୍ତାବିଜ ସେ ଯେବେ ଚାହିଁବେ ଦେଖିପାରିବେ । ମୋର୍ଶ ଏବଂ ତାଙ୍କ ଦଳ ଭାରତରେ ସେପ୍‌ଟେମ୍ବର ୧୯୯୧ରେ ଆସି ପହଞ୍ଚିଲେ । ନ·ବ·ଆ·ର ଏ ଦଳର ଉଦ୍ଦେଶ୍ୟ ନେଇ ସନ୍ଦେହ ଥିଲା । ତେଣୁ ପ୍ରଥମେ ସେମାନେ ଏ ଦଳକୁ ଭେଟିବା ପାଇଁ ମନା କଲେ । ଗୁଜୁରାଟ ସରକାର ଏ ଦଳକୁ ନିଜର ବନ୍ଧୁ ହିସାବରେ ଦେଖୁଥିଲେ । ତେଣୁ ଦଳକୁ ଗୁଜୁରାଟ ସରକାର ରାଜକୀୟ ସ୍ୱାଗତ ଦେଲେ । ବର୍ଷେ ପରେ ଜୁନ୍ ୧୯୯୨ରେ ଐତିହାସିକ ସ୍ୱାଧୀନ ସମୀକ୍ଷା (ମୋର୍ଶ ରିପୋର୍ଟ) ପ୍ରକାଶିତ ହେଲା ।

ରିପୋର୍ଟରେ ପ୍ରକଳ୍ପର ସବୁ ଦିଗର ସମୀକ୍ଷା କରା ଯାଇଥିଲା । ପିଆଜ ଛଡ଼ାଇଲା ଭଳି ସମୀକ୍ଷକମାନେ ପ୍ରକଳ୍ପର ସବୁ ତଥ୍ୟକୁ ସ୍ତର ସ୍ତର କରି ଉନ୍ମୋଚିତ କରିଥିଲେ । କୌଣସି ଦିଗ ତାଙ୍କ ପାଇଁ ଅତି ଛୋଟ କିମ୍ବା ଅତି ବଡ଼ ନଥିଲା । ସେମାନେ ମନ୍ତ୍ରୀ ଓ ଅମଲାମାନଙ୍କୁ ଭେଟିଲେ, ସେ ଅଞ୍ଚଳରେ କାମ କରୁଥିବା ବେସରକାରୀ ସଂସ୍ଥାମାନଙ୍କୁ ମଧ୍ୟ ଭେଟିଲେ । ଗାଁରୁ ଗାଁ, ପୁର୍ନବାସ ବସତିରୁ

ପୁର୍ନବାସ ବସତି ବୁଲି ତଥ୍ୟ ସଂଗ୍ରହ କଲେ । ସବୁ ପ୍ରକାରର ପୁର୍ନବାସ ବସତି ତାଙ୍କ ଗସ୍ତରେ ଅନ୍ତର୍ଭୁକ୍ତ ଥିଲା - ଭଲ, ମନ୍ଦ, ସ୍ଥାୟୀ, ଅସ୍ଥାୟୀ ସବୁ । ଶହ ଶହ ଲୋକଙ୍କ ସହିତ ସେମାନେ କଥା ହେଲେ । ପ୍ରକଳ୍ପର ବୁଡ଼ି ଅଞ୍ଚଳରେ ଏବଂ ଜଳସେଚିତ ହେବାକୁଥିବା କମାଣ୍ଡ ଅଞ୍ଚଳରେ ବାରମ୍ବାର ଗସ୍ତ କଲେ । ସେମାନେ କଚ୍ଛ ଓ ଗୁଜୁରାଟର ଅନ୍ୟ ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ମଧ୍ୟ ଗଲେ । ସେମାନେ ନିଜେ ନିଜ ପାଇଁ ଅଲଗା ତଥ୍ୟ ସଂଗ୍ରହ ବ୍ୟବସ୍ଥା କରାଇଲେ । ପ୍ରକଳ୍ପର ପ୍ରତିଟି ଦିଗକୁ ସେମାନେ ବିସ୍ତୃତ ଭାବରେ ପରୀକ୍ଷା କଲେ । ଜଳ ବିଜ୍ଞାନ ଓ ଜଳ ପରିଚାଳନା, ନଈର ଉପରମୁଣ୍ଡର ପରିବେଶ, ତଳମୁଣ୍ଡର ପରିବେଶ, ପାଣି ଜକେଇବା, ଲୁଣି ମାରିବା, ଜଳ ନିଷ୍କାସନ, ସ୍ୱାସ୍ଥ୍ୟ, ପରିବେଶ ଓ ବନ୍ୟଜୀବନ ଉପରେ ପ୍ରଭାବ ଆଦି ସବୁ ବିଷୟ ହେଲା ସେମାନଙ୍କ ଅନୁଧ୍ୟାନର ଅଂଶବିଶେଷ ।

ମୋର୍ଶ ରିପୋର୍ଟ ଯାହା କହେ ତାହା ଚାଞ୍ଚଲ୍ୟକର । ଅବଶ୍ୟ ରିପୋର୍ଟର ସ୍ୱର ଚାଞ୍ଚଲ୍ୟକର ନୁହେଁ, ତାହା ମପାଚୁପା ଏବଂ ସନ୍ତୁଳିତ । (ସେ ସ୍ୱରକୁ ମୁଁ ପ୍ରଶଂସା କରେ, କିନ୍ତୁ ସେପରି ମୁଁ ଲେଖିପାରେ ନାହିଁ ।) ଅତି ନିରପେକ୍ଷ ଓ ସନ୍ତୁଳିତ ଭାବରେ ଭାରତୀୟ ରାଷ୍ଟ୍ର ବ୍ୟବସ୍ଥା ଓ ବିଶ୍ୱବ୍ୟାଙ୍କ ଭିତରେ ଥିବା ସମ୍ପର୍କ ଉପରେ ଏହା ଗୁରୁତର ଦୋଷାରୋପ କରେ । ଉଭୟଙ୍କର କଥା ଓ କାମର କେଉଁ ଏକ ମଝି ଅଞ୍ଚଳରେ ପରସ୍ପରର ପ୍ରେମରେ କିଭଳି ଦୁହେଁ ଆରାମରେ ବୁଡ଼ି ରହିଛନ୍ତି, ହୁଏତ ଅନିଚ୍ଛାକୃତ ଭାବରେ ତାହା ଏହି ରିପୋର୍ଟ ସ୍ପଷ୍ଟ କରିଦେଇଛି ।

୩୭୫ ପୃଷ୍ଠାର ରିପୋଟର ମୂଳ ସୁପାରିଶ ଥିଲା ସମ୍ପୂର୍ଣ୍ଣ ଭାବରେ ଆଶାତୀତ ଏବଂ ଦ୍ୱିଧାହୀନ -

*"ଆମର ମତାନୁସାରେ ବର୍ତ୍ତମାନର ସର୍ଦ୍ଦାର ସରୋବର ପ୍ରକଳ୍ପର*

ଯୋଜନାଗୁଡ଼ିକ ଦୋଷଯୁକ୍ତ ଏବଂ ଦୁର୍ବଳ । ବର୍ତ୍ତମାନର ପ୍ରଚଳିତ ବ୍ୟବସ୍ଥାରେ ଏହି ପ୍ରକଳ୍ପ ଦ୍ୱାରା ପ୍ରଭାବିତ ସମସ୍ତ ଲୋକଙ୍କୁ ପୁନର୍ବାସିତ କରିବା ଅସମ୍ଭବ । ପ୍ରକଳ୍ପର ସାମଗ୍ରିକ ପରିବେଶୀୟ ପ୍ରଭାବ ଉପରେ କୌଣସି ଅନୁଧ୍ୟାନ ବର୍ତ୍ତମାନ ସୁଦ୍ଧା କରାଯାଇ ନାହିଁ । ଆମେ ଏହା ମଧ୍ୟ ବିଶ୍ୱାସ କରୁ ଯେ ବର୍ତ୍ତମାନର ଅବସ୍ଥା ପାଇଁ ଭାରତର ସରକାରମାନଙ୍କ ସହିତ ବ୍ୟାଙ୍କ ମଧ୍ୟ ସମାନ ପରିମାଣରେ ଦାୟୀ । ପ୍ରକଳ୍ପର ବର୍ତ୍ତମାନ ରୂପରୁ ଏହା ସ୍ପଷ୍ଟ ଯେ ଯୋଜନାକାରୀଙ୍କର ମୂଳ ଲକ୍ଷ ବୈଷୟିକ ଏବଂ ଅର୍ଥନୈତିକ । ତାଙ୍କ ଅଟକଳରେ ପ୍ରକଳ୍ପର ପରିବେଶୀୟ ଏବଂ ମାନବୀୟ ମୂଲ୍ୟ ସ୍ଥାନ ପାଇନାହିଁ । ··· ଏହା ଭିତରେ ଭାରତର କେନ୍ଦ୍ର ଏବଂ ରାଜ୍ୟ ସରକାରମାନେ ପ୍ରକଳ୍ପ ଉପରେ ଅନେକ ଅର୍ଥ ବ୍ୟୟ କରିସାରିଲେଣି । ଆମେ ଯେ ସେ ଅର୍ଥ ନଷ୍ଟ ହେବାର ଦେଖିବାକୁ ଚାହୁଁ ସେ କଥା ନୁହେଁ । ମାତ୍ର ଆମର ମତରେ ମାନବୀୟ ଏବଂ ପରିବେଶୀୟ ମୂଲ୍ୟର ସଠିକ ଆକଳନ ନକରି ପ୍ରକଳ୍ପର କାମ ଆଗେଇନେଲେ ଅପବ୍ୟୟର ପରିମାଣ ବେଶ୍ ଅଧିକ ହୋଇପାରେ । ଯେହେତୁ ପ୍ରକଳ୍ପର ଦୋଷ ସବୁ ଏତେ ସହଜରେ ଦୃଶ୍ୟମାନ ଯେ କୌଣସି ତାଳିପକା ସମାଧାନ ଦ୍ୱାରା ଏ ଭୁଲ୍ ସବୁ ଦୂର କରିବା କଷ୍ଟସାଧ୍ୟ । କାରଣ ଦୋଷଗୁଡ଼ିକ ମୌଳିକ । ଫଳରେ ଆମ ମତରେ ବ୍ୟାଙ୍କ ଏ ପ୍ରକଳ୍ପରୁ ଓହରିଯାଇ ଆଉ ଥରେ ମୂଳରୁ ଏଗୁଡ଼ିକୁ ଅନୁଧ୍ୟାନ କରିବା ଉଚିତ । ବ୍ୟାଙ୍କ ନିଜ କାର୍ଯ୍ୟଧାରାର ବିଫଳତା ମଧ୍ୟ ସ୍ୱୀକାର କରିବା ଉଚିତ ହେବ ।"

ଚାରିଜଣ ପ୍ରାଜ୍ଞ, ସ୍ୱାଧୀନ ଲୋକଙ୍କର ଏକ ରିପୋର୍ଟ ଶହ ଶହ ଅନ୍ୟ ବେତନଭୋଗୀ ଲୋକ ଭାଙ୍ଗିଥିବା ଆମର ବିଶ୍ୱାସକୁ ଫେରାଇ ଆଣିବା ପାଇଁ ବିଶେଷ ସାହାଯ୍ୟ କଲା । କିନ୍ତୁ ପ୍ରକଳ୍ପରୁ ଓହରି ଯିବା ପାଇଁ ବ୍ୟାଙ୍କ ପ୍ରସ୍ତୁତ ନଥିଲା । ବିଶ୍ୱବ୍ୟାଙ୍କ ପ୍ରକଳ୍ପ ପାଇଁ ଟଙ୍କା ଯୋଗାଇ ଚାଲିଲା । ସ୍ୱାଧୀନ ସମୀକ୍ଷା ରିପୋର୍ଟ ପ୍ରକାଶ ପାଇବାର ଦୁଇମାସ ପରେ ବ୍ୟାଙ୍କ ଭାରତକୁ ପାମେଲା କକ୍ସ କମିଟି ପଠାଇଲା ।

ସ୍ୱାଧୀନ ସମୀକ୍ଷା ଯେଉଁ କଥା ବିରୁଦ୍ଧରେ ଚେତାଇଥିଲା, କଷ୍ଟ କମିଟି ଠିକ୍ ସେଇଆ କଲା । ପ୍ରକଳ୍ପର ଦୋଷ ଛଡ଼ାଇବା ପାଇଁ କଷ୍ଟ କମିଟି ଏକ ତାଳିପକା ଯୋଜନା ସୁପାରିଶ କଲା । ଏହି ତାଳିପକା ସୁପାରିଶକୁ ମାନିନେଇ କିଛି ମୌଳିକ ନ୍ୟୁନତମ ସର୍ତ୍ତ ପୂରଣ କରିବା ପାଇଁ ବ୍ୟାଙ୍କ ଅକ୍ଟୋବର ୧୯୯୨ରେ ଭାରତ ସରକାରଙ୍କୁ ଅନୁରୋଧ କଲା ଏବଂ ଏଥିପାଇଁ ୬ ମାସ ସମୟ ଦେଲା । ମାତ୍ର ସରକାର ଏତକ ମଧ୍ୟ କଲେ ନାହିଁ । ଫଳ ସ୍ୱରୂପ ମାର୍ଚ୍ଚ ୩୦, ୧୯୯୩ରେ ବିଶ୍ୱ ବ୍ୟାଙ୍କ ପ୍ରକଳ୍ପରୁ ଓହରିଗଲା । କିନ୍ତୁ ସତରେ ଦେଖିବାକୁ ଗଲେ ପ୍ରକଳ୍ପରୁ ଓହରି ଯିବା ପାଇଁ ଭାରତ ସରକାର ବ୍ୟାଙ୍କୁ ତାହାର ଦିନକ ଆଗରୁ ଅନୁରୋଧ କରିସାରିଥିଲେ ।

ଏ ପର୍ଯ୍ୟନ୍ତ କେହି ବି ବିଶ୍ୱ ବ୍ୟାଙ୍କକୁ ଏକ ପ୍ରକଳ୍ପରୁ ଓହରି ଯିବା ପାଇଁ ବାଧ୍ୟ କରିପାରି ନଥିଲେ । ବ୍ୟାଙ୍କର ଏ ବିଫଳତା ଥିଲା ତା'ର ଇତିହାସରେ ପ୍ରଥମ । ଆଉ ବ୍ୟାଙ୍କୁ ହରାଇଲା କିଏ? ବିଶ୍ୱର ଏକ ଦରିଦ୍ର ଦେଶର ଦରିଦ୍ରତମ ଲୋକମାନଙ୍କ ଭିତରୁ କେଇଜଣ । ଏପରି କେଇଜଣ ଲୋକ ଯେଉଁମାନଙ୍କୁ ଭେଟିବା ପାଇଁ ବ୍ୟାଙ୍କର ଅଧ୍ୟକ୍ଷ ଲୁଇସ୍ ପ୍ରେଷ୍ଟନ୍‌ଙ୍କର ଭାରତଗସ୍ତ ସମୟରେ ବେଳ ନଥିଲା । ବ୍ୟାଙ୍କୁ ବରଖାସ୍ତ କରିବା ଥିଲା ଉପତ୍ୟକାର ଲୋକଙ୍କ ପାଇଁ ଏକ ବିରାଟ ନୈତିକ ବିଜୟ ।

କିନ୍ତୁ ଏ ଆନନ୍ଦ ବେଶି ଦିନ ରହିପାରିଲା ନାହିଁ । ଗୁଜୁରାଟ ସରକାର ନିଜେ ନିଅଣ୍ଟ ୨୦ କୋଟି ଡଲାର ଉଠେଇ ବନ୍ଧ କାମ ଜାରୀ ରଖିବେ ବୋଲି ଘୋଷଣା କଲେ । ସମୀକ୍ଷା ହେଉଥିବା ସମୟରେ ଏବଂ ରିପୋର୍ଟ ପ୍ରକାଶିତ ହେଲା ପରେ ମଧ୍ୟ ପ୍ରଶାସନ ଏବଂ ଲୋକଙ୍କ ମଧ୍ୟରେ ସଂଘର୍ଷ ଲାଗି ରହିଥିଲା । ଗିରଫଦାରୀ, ଲାଠି ଚାର୍ଜ, ଆମରଣ ଅନଶନ, ପ୍ରତିଶ୍ରୁତି, ପ୍ରତିଶ୍ରୁତିଭଙ୍ଗ ସବୁ

ନିୟମିତ ଭାବରେ ଚାଲିଥିଲା । ଯେଉଁ ଲୋକମାନେ ନିଜ ଗାଁ ଛାଡ଼ି ପୁର୍ନବାସ କଲୋନୀକୁ ଚାଲି ଯାଇଥିଲେ ସେମାନେ ଏହା ଭିତରେ ନିଜ ଗାଁକୁ ଆଉ ଥରେ ଫେରି ଆସିବାକୁ ଆରମ୍ଭ କରିଥିଲେ । ମହାରାଷ୍ଟ୍ରର ମଣିବେଲି ଗାଁ ଥିଲା ଆନ୍ଦୋଳନର ଗୋଟିଏ ନାଭିକେନ୍ଦ୍ର ଏବଂ ଏଠାରୁ ଆରମ୍ଭ ହେଲା 'ମୌସୁମୀ ସତ୍ୟାଗ୍ରହ' । ୧୯୯୩ରେ ଯେତେବେଳେ ଜଳଭଣ୍ଡାର ଯୋଗୁଁ ଘରମାନଙ୍କରେ ପାଣି ପଶିବାକୁ ଆରମ୍ଭ କଲା ଲୋକେ ଘର ଛାଡ଼ି ଗଲେ ନାହିଁ । ନିଜ ଘର, ପୈତୃକ ଜମି, ପ୍ରିୟ ଗାଁ ସହିତ ବୁଡ଼ିଯିବା ଶ୍ରେୟସ୍କର ମନେ କଲେ । ହେଲେ ପୁଲିସ ତାଙ୍କୁ ସେତକ ବି କରାଇ ଦେଲା ନାହିଁ, ଗିରଫ କରି ଭିଡ଼ିନେଲା । ନ·ବ·ଆ· ପ୍ରକଳ୍ପର ଏକ ସାମଗ୍ରିକ ସରକାରୀ ସମୀକ୍ଷା ଦାବି କଲା । ଆଉ ଏ କଥା ମଧ୍ୟ ଘୋଷଣା କଲା ଯେ ଦାବି ପୂରଣ ନ ହେଲେ ଅଗଷ୍ଟ ୬, ୧୯୯୩ ଦିନ ଆନ୍ଦୋଳନକାରୀମାନଙ୍କର ଏକ ଦଳ ଜଳଭଣ୍ଡାରର ବଢୁଥିବା ପାଣିରେ ଆତ୍ମବିସର୍ଜନ ଦେବେ । ଅଗଷ୍ଟ ୫ ତାରିଖରେ ସରକାର ସମୀକ୍ଷା ପାଇଁ ଆଉ ଏକ ପାଞ୍ଚ ଜଣିଆ କମିଟି ବସାଇବା କଥା ଘୋଷଣା କଲେ ।

ଗୁଜୁରାଟ ସରକାର ତାଙ୍କ ରାଜ୍ୟରେ ପଶିବା ପାଇଁ ଏ କମିଟିକୁ ଅନୁମତି ଦେଲେ ନାହିଁ । ଏହି କମିଟିର ରିପୋର୍ଟ ତା' ପରବର୍ଷ ବାହାରିଲା । ସ୍ୱାଧୀନ ସମୀକ୍ଷାଠାରୁ ଏହାର ମତ କିଛି ବିଶେଷ ଭିନ୍ନ ନଥିଲା । ମାତ୍ର ଏ କମିଟିର ରିପୋର୍ଟ ମଧ୍ୟ କିଛି ବିଶେଷ ପ୍ରଭାବ ପକାଇଲା ନାହିଁ । କେଉଁଠି କିଛି ବଦଳିଲା ନାହିଁ । ନା ସରକାରର ମନୋବୃତ୍ତି ନା ପ୍ରକଳ୍ପର କାମର ଗତି । ଏଇଟା ସରକାରର ଜନମାରଣ ନୀତିର ଆଉ ଗୋଟେ ରୂପ । କମିଟି ପରେ କମିଟି ବସାଇ ସରକାର ଆମମାନଙ୍କୁ ମାରି ଚାଲନ୍ତି ।

ଫେବୃଆରୀ ୧୯୯୪ରେ ଗୁଜୁରାଟ ସରକାର ବନ୍ଧର ଫାଟକ

ସବୁ ସ୍ଥାୟୀ ଭାବରେ ବନ୍ଦ କରିଦେବା ପାଇଁ ଆଦେଶ ଦେଲେ । ମେ ୧୯୯୪ରେ ନ·ବ·ଆ· ସର୍ଦ୍ଦାର ସରୋବର ବନ୍ଧର ମୂଳ ଭିତ୍ତିକୁ ହିଁ ପ୍ରଶ୍ନ କରି ବନ୍ଧ ତିଆରି ଉପରେ ରହିତାଦେଶ ଦାବିକରି ଭାରତୀୟ ସୁପ୍ରିମକୋର୍ଟରେ ଏକ ରିଟ୍ ପିଟିସନ ଦାଖଲ କଲା ।

୧୯୯୪ରେ ମୌସୁମୀ ବର୍ଷା ସମୟରେ ଯେତେବେଳେ ଜଳଭଣ୍ଡାରରେ ଜଳର ସ୍ତର ବଢ଼ିଲା ଏବଂ ପାଣି ବନ୍ଧର ଅନ୍ୟ ପଟେ ବାଢ଼େଇ ହେଲା ସେତେବେଳେ ବନ୍ଧର ଏକ ଅଂଶରୁ ୬୫,୦୦୦ ଘନମିଟର କଂକ୍ରିଟ୍ ଏବଂ ୩୫,୦୦୦ ଘନମିଟର ପଥର ଖସି ବାହାରିଗଲା । ପାଣିର ଜୋର କମାଇବା ଅଞ୍ଚଳରେ ୬୫ ମିଟର ଆକାରର ଗୋଟିଏ ଗାତ ସୃଷ୍ଟି ହୋଇଗଲା । ନଇପଠାରେ ଥିବା ଶକ୍ତି କେନ୍ଦ୍ରରେ ବି ପାଣି ପଶିଗଲା । ହେଲେ ଏ ଦୁର୍ଘଟଣାର ବିବରଣୀ ଅନେକ ମାସ ପର୍ଯ୍ୟନ୍ତ ଗୁପ୍ତ ରହିଲା । ଏ ବିଷୟରେ ଖବର କାଗଜରେ ରିପୋର୍ଟ ପ୍ରକାଶ ପାଇବାକୁ ଆରମ୍ଭ କଲା ଯାଇ ଜାନୁଆରୀ ୧୯୯୫ରେ ।

ଏପ୍ରିଲ ୧୯୯୫ରେ ସୁପ୍ରିମକୋର୍ଟ କ୍ଷତିପୂରଣ ଓ ପୁର୍ନବାସ ଯୋଜନାରେ ଦୋଷତ୍ରୁଟିର କାରଣ ଦେଖାଇ ବନ୍ଧ ତିଆରି କାମ ଉପରେ ରହିତାଦେଶ ଜାରୀ କଲେ । ସେ ସମୟରେ ସମୁଦ୍ର ପତ୍ତନ ଉପରୁ ବନ୍ଧର ଉଚ୍ଚତା ଥିଲା ୮୦ ମିଟର ।

କିନ୍ତୁ ଏହାରି ଭିତରେ ମଧ୍ୟପ୍ରଦେଶରେ ଆହୁରି ଦୁଇଟି ବନ୍ଧର କାମ ଆରମ୍ଭ ହୋଇସାରିଥିଲା । ଗୋଟିଏ ହେଲା ନର୍ମଦା ସାଗର ଯାହା ବିନା ସର୍ଦ୍ଦାର ସରୋବର ବନ୍ଧର ଦକ୍ଷତା ୧୩ରୁ ୩୦ ପ୍ରତିଶତ କମିଯିବ । ଅନ୍ୟଟି ହେଲା ସର୍ଦ୍ଦାର ସରୋବରର ଉପର ମୁଣ୍ଡରେ ଥିବା ମହେଶ୍ୱର ବନ୍ଧ । ଏଥିପାଇଁ ମଧ୍ୟପ୍ରଦେଶ ସରକାର କପଡ଼ା ନିର୍ମାତା ଏସ୍· କୁମାର କମ୍ପାନୀ ସହିତ ଏକ ବିଜୁଳି ଶକ୍ତି କ୍ରୟ ଚୁକ୍ତି

ସ୍ୱାକ୍ଷର କରିଛନ୍ତି ।

ସୁପ୍ରିମକୋର୍ଟର ରହିତାଦେଶ ବଳରେ ସର୍ଦ୍ଦାର ସରୋବର ଅଞ୍ଚଳର ଆଖପାଖରେ ଉତ୍ତେଜନା କମ୍ ହେଲା । ତେଣୁ ଲୋକଙ୍କ ସଂଘର୍ଷ ନଦୀର ଉପର ମୁଣ୍ଡରେ, ଉର୍ବର ନିମାଡ୍ ଅଞ୍ଚଳରେ, ମହେଶ୍ୱର ବନ୍ଧ ପାଖକୁ ଘୁଞ୍ଚିଗଲା ।

ସୁପ୍ରିମ୍ କୋର୍ଟରେ କେଶ୍ ଚାଲୁଥିବାରୁ ବନ୍ଧ ତିଆରି କାମ ବନ୍ଦ ରହିଲା । ତେଣୁ ସେଠାରେ ସରକାରୀ ଅତ୍ୟାଚାର ମଧ୍ୟ କମିଗଲା । କିନ୍ତୁ ପୁର୍ନବାସର ପ୍ରହସନ ଆଉ ଜଙ୍ଗଲ କଟା ଚାଲୁ ରହିଲା । ଫଳରେ ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ଲୋକେ ଅନ୍ୟ ଜାଗାକୁ ଉଠିଯିବା ପାଇଁ ବାଧ୍ୟ ହେଲେ ।

ବନ୍ଧ ନିଜର ନିର୍ଦ୍ଦିଷ୍ଟ ଉଚ୍ଚତା ପର୍ଯ୍ୟନ୍ତ ତିଆରି ହୋଇନାହିଁ । ମାତ୍ର ଯେତିକି ମଧ୍ୟ ତିଆରି ହୋଇଛି ସେତିକିର ପ୍ରଭାବ ପରିବେଶ ଉପରେ ଓ ନଦୀ କୂଳରେ ରହୁଥିବା ଲୋକଙ୍କ ଉପରେ ଅତି ଉତ୍କଟ । ବନ୍ଧ ଜାଗାରେ ଓ ଆଖପାଖର ଗାଁମାନଙ୍କରେ ମାଲେରିଆର ପ୍ରାଦୁର୍ଭାବ ବନ୍ଧ ତିଆରି ହେବା ପରେ ଛ'ଗୁଣ ବଢ଼ିଛି । ସର୍ଦ୍ଦାର ସରୋବର ବନ୍ଧର ଉପର ମୁଣ୍ଡରେ ନଈ ଦୁଇ କୂଳରେ କେତେ କିଲୋମିଟର ଧରି ୨୦୦ ମିଟର ଚଉଡ଼ା ଓ ଅଣ୍ଟା ଗଭୀରର କାଦୁଅ ଜମା ହୋଇଯାଇଛି । ଫଳରେ ନଈକୁ ଯିବା ପାଇଁ ବାଟ ପୂରା ବନ୍ଦ ହୋଇଯାଇଛି । ପାଣି ଆଣିବା ପାଇଁ ସ୍ତ୍ରୀ ଲୋକମାନଙ୍କୁ ମାଇଲ୍ ମାଇଲ୍ ବାଟ ଚାଲିବାକୁ ପଡୁଛି । ଗାଈ, ଛେଳି କାଦୁଅରେ ପଶିଯାଇ ବାହାରି ନପାରି ମରୁଛନ୍ତି । ବନ୍ଧ ଯୋଗୁ ନଦୀର ସୁଅ ଅନିୟମିତ ହୋଇଯାଇଛି, ସେଥିରେ ଆଦିବାସୀମାନଙ୍କର ହୁଲିଡଙ୍ଗାଗୁଡ଼ିକୁ ଠିକ୍ ଭାବରେ ଚଳାଇବା କଷ୍ଟ ହୋଇପଡୁଛି ।

ନଈର ଆହୁରି ଉପରକୁ କାଦୁଅ ଜମା ହୋଇନାହିଁ ସତ । ହେଲେ

ସେଠିକାର ସମସ୍ୟା ଭିନ୍ନ ପ୍ରକାରର । ଆଗରୁ ଭୂମିହୀନ ଆଦିବାସୀ, ହରିଜନମାନେ ପାରମ୍ପରିକ ଭାବରେ ନଈ କୂଳର ପଟୁମିଶା ମାଟିରେ ଧାନ, ପରିବା ଓ ଫଳ ଚାଷ କରୁଥିଲେ । ବାର୍ଗୀ ବନ୍ଧ ତିଆରି ହେଲା ପରେ ଇଞ୍ଜିନିୟରମାନେ ଚେତାବନୀ ନଦେଇ ଜଳଭଣ୍ଡାରରୁ ମନଇଚ୍ଛା ପାଣି ଛାଡ଼ି ଦେଉଛନ୍ତି । ତାହା ଫସଲ ସବୁକୁ ଧୋଇ ନେଉଥିବାରୁ ଶହ ଶହ ଚାଷୀ ପରିବାରଙ୍କର ଜୀବିକା ବୁଡ଼ିଯାଉଛି ।

ହଠାତ୍, ନିଜର ଜଣାଶୁଣା, ପ୍ରିୟ ନଈ ଉପରୁ ଲୋକଙ୍କର ବିଶ୍ୱାସ ତୁଟିଯାଉଛି । ସତେ ଯେମିତି କେହି ଜଣେ ପ୍ରିୟଜନଙ୍କର ମୁଣ୍ଡ ଖରାପ ହୋଇଯାଇଛି । ଗୋଟାଏ ନଈକୁ ଭଲ ପାଉଥିବା ଲୋକଙ୍କ ପାଇଁ ସେଇ ନଈକୁ ହରାଇବା ଏକ ଅପୂରଣୀୟ କ୍ଷତି । କିନ୍ତୁ ଏମିତି କହିଚାଲିଲେ ମୋ ପିଠିରେ ଆପଣ ଦୁଇ ବିଧା ପକାଇବେ । ଜାତୀୟ ସ୍ୱାର୍ଥ ଆଗରେ ଆବେଗର ସ୍ଥାନ କ'ଣ ? ଏଠି ଖାଲି ସଂଖ୍ୟା ଓ ପରିସଂଖ୍ୟାନକୁ ଧରି କଥା ହେବା ଦରକାର । ହେଲେ, ମୋ ମନ ତ ମୋ କଥା ମାନୁନି । ମୁଁ କ'ଣ ବା କରିବି ? ମୋତେ କ୍ଷମା କରନ୍ତୁ ।

ବିସ୍ଥାପିତମାନଙ୍କର ସମସ୍ୟା ପ୍ରତି ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ର ସରକାରଙ୍କର ମନୋଭାବ ପୂରା ବେଖାତିର ଓ ଖାମଖିଆଲି ଢଙ୍ଗର । କାଗଜପତ୍ରରେ ଗୁଜୁରାଟ ସରକାରର ପୁର୍ନବାସ ନୀତି ଆଗରେ ଅନ୍ୟ ଦୁଇ ରାଜ୍ୟର ଯୋଜନା କିଛି ନୁହେଁ କହିଲେ ଚଳେ । ସରକାରୀ ପ୍ରଚାର ଅନୁସାରେ ଗୁଜୁରାଟ ସରକାରର ପୁର୍ନବାସ ନୀତି ବିଶ୍ୱର ସର୍ବୋତ୍ତମ । ଏହି ନୀତିରେ ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶର ବିସ୍ଥାପିତ ଲୋକଙ୍କୁ ଜମି ବଦଳରେ ଜମି ଦେବାର ବ୍ୟବସ୍ଥା ଅଛି । ତା'ସହିତ ଜମିର ପଟ୍ଟା ନଥିବା (ଜବର ଦଖଲକାରୀ !) ଆଦିବାସୀଙ୍କୁ ମଧ୍ୟ ଜମି ଯୋଗାଇ ଦେବାର ବ୍ୟବସ୍ଥା ଅଛି । ହେଲେ ଅସଲ ଛଳନା ଅଛି 'ପ୍ରକଳ୍ପ ପ୍ରଭାବିତ' କିଏ ତା'ର ସଂଜ୍ଞାରେ ।

କିନ୍ତୁ ଅସଲ କଥା ହେଲା ଯେ ଗୁଜୁରାଟ ସରକାର ନିଜ ରାଜ୍ୟରେ ବୁଡ଼ିବାକୁ ଥିବା ୧୯ ଗାଁ'ର ଲୋକଙ୍କୁ ଏ ପର୍ଯ୍ୟନ୍ତ ଥଇଥାନ କରିପାରିନାହିଁ । ଅନ୍ୟ ଦୁଇଟି ରାଜ୍ୟରେ ଥିବା ୨୨୬ଟି ଗାଁ'ର ଲୋକଙ୍କ କଥା ପଚାରେ କିଏ? ଗୁଜୁରାଟର ୧୯ଟି ଗାଁ'ର ଲୋକଙ୍କୁ ବଣ୍ଟା ଯାଇଛି ୧୭୫ଟି ଭିନ୍ନ ଭିନ୍ନ ପୁନର୍ବାସ କଲୋନୀରେ । ଯାହା ଫଳରେ ଭାଇ ଦୂରେଇ ଯାଇଛି ଭାଇଠାରୁ, ବନ୍ଧୁ ଦୂରେଇ ଯାଇଛି ବନ୍ଧୁଠାରୁ ।

ଅଳ୍ପ କେଇଟି 'ଆଦର୍ଶ ଗାଁ'କୁ ଛାଡ଼ିଦେଲେ ପୁର୍ନବାସ ହୋଇଛି ଏକ ବିରାଟ ବଡ଼ ଛଳନା ଓ ଅବହେଳାର କାହାଣୀ । ଅଳ୍ପ କେତେଜଣଙ୍କୁ ଜମି ମିଳିଛି, ଅନ୍ୟମାନଙ୍କୁ ମିଳିନାହିଁ । କେତେ ଜଣଙ୍କୁ ଯେଉଁ ଜମି ମିଳିଛି ତା' ବି ପଥୁରିଆ ଆଉ ବନ୍ଧ୍ୟା । କେତେଜଣଙ୍କୁ ଏମିତି ଜମି ମିଳିଛି ଯେଉଁଥିରେ ବର୍ଷକୁ ବାରମାସ ପାଣି ଜକେଇ ରହୁଛି । ଆଉ କେତେଜଣଙ୍କୁ ଜମିର ପୂର୍ବ ମାଲିକ ବାଡ଼େଇ ବାହାର କରିଦେଇଛି । କାରଣ ସରକାର ଏ ପର୍ଯ୍ୟନ୍ତ ସେ ପୁରୁଣା ଜମି ମାଲିକମାନଙ୍କୁ ପଇସା ଦେଇନାହାନ୍ତି ।

ଯେଉଁମାନଙ୍କୁ ଅନ୍ୟ ଗାଁମାନଙ୍କର ଆଖପାଖରେ ଥଇଥାନ କରାଯାଇଥିଲା ସେମାନଙ୍କୁ କେତେ ଜାଗାରେ ଲୁଟକରି, ବାଡ଼େଇ ଗାଁର ପୁରୁଣା ଲୋକମାନେ ବାହାର କରି ଦେଇଛନ୍ତି । କେତେ ଜାଗାରେ ଦୁଇଟି ବନ୍ଧ ଦ୍ୱାରା ବିସ୍ଥାପିତ ହୋଇଥିବା ଲୋକଙ୍କୁ ପାଖାପାଖି ଜାଗା କ୍ଷତିପୂରଣ ଭାବରେ ଦିଆଯାଇଛି । ଗୋଟିଏ ମାମଲାରେ ତ ତିନୋଟି ବନ୍ଧ (ଉକାଇ ବନ୍ଧ, ସର୍ଦ୍ଦାର ସରୋବର ବନ୍ଧ ଏବଂ କର୍ଜନ ବନ୍ଧ) ଦ୍ୱାରା ବିସ୍ଥାପିତ ଲୋକଙ୍କୁ ଗୋଟିଏ ଜାଗାରେ ଥଇଥାନ କରାଗଲା । ଫଳରେ ପାଣି, ଗୋଚର ଜମି, କାମ ପାଇଁ ତାଙ୍କ ନିଜ ନିଜ ଭିତରେ ଲଢ଼େଇ, ଗଣ୍ଡଗୋଳ ଲାଗିବା ଆରମ୍ଭ

କଲା । ତା'ଛଡ଼ା ତାଙ୍କୁ ମିଳିଥିବା ଜମିରେ ଆଗରୁ ଭାଗ ଚାଷ କରୁଥିବା ଭୂମିହୀନ ଶ୍ରମିକମାନଙ୍କ ସହିତ ମଧ୍ୟ ତାଙ୍କର ଗଣ୍ଡଗୋଳ ଲାଗିରହିଛି, କାରଣ ଭାଗଚାଷୀଙ୍କୁ କିଛି ନଦେଇ ଜମିର ମାଲିକମାନେ ତାହା ସରକାରଙ୍କୁ ବିକି ଦେଇଛନ୍ତି ।

ଆହୁରି ଅନ୍ୟ ଏକ ପ୍ରକାରର ବିସ୍ଥାପିତ ମଧ୍ୟ ଅଛନ୍ତି । ସେମାନେ ହେଲେ ବନ୍ଧ-ବିସ୍ଥାପିତଙ୍କ ପୁର୍ନବାସ ବସତି ପାଇଁ ଯେଉଁମାନଙ୍କର ଜମି ସରକାର ଅଧିଗ୍ରହଣ କରିଛନ୍ତି । ବିସ୍ଥାପିତମାନଙ୍କ ଭିତରେ ମଧ୍ୟ ଏକ ବଡ଼ ସାନ ଭେଦ ଦେଖାଦେଇଛି । ସର୍ଦ୍ଦାର ସରୋବର ବନ୍ଧ ଦ୍ୱାରା ବିସ୍ଥାପିତ ଲୋକେ ହେଲେ ବିସ୍ଥାପିତମାନଙ୍କ ମଧ୍ୟରେ ରାଜା । କାରଣ ତାଙ୍କର ନାଁରେ ସୁପ୍ରିମ କୋର୍ଟରେ ମାମଲା ଦରଜ ଅଛି । ଟି·ଭି·, ଖବରକାଗଜ ଆଦିର ସାମ୍ବାଦିକମାନେ ତାଙ୍କଠାରୁ ବେଳେବେଳେ ସାକ୍ଷାତକାର ମଧ୍ୟ ନିଅନ୍ତି । ଅନ୍ୟ ସବୁ ଉନ୍ନୟନମୂଳକ ପ୍ରକଳ୍ପରେ ନା ନ·ବ·ଆ· କାମ କରୁଛି, ନା ସେ ପ୍ରକଳ୍ପ ଦ୍ୱାରା ପ୍ରଭାବିତ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ କେହି କୋର୍ଟରେ ମାମଲା ଦାୟର କରିଛି, ନା ଗଣମାଧ୍ୟମ ତାଙ୍କର ଖବର ବୁଝୁଛି । ମୋଟ ଉପରେ କହିଲେ କାଗଜ ପତ୍ରରେ ଏମାନଙ୍କର କୌଣସି ସ୍ଥିତି ହିଁ ନାହିଁ । ସେମାନେ ସବୁ କୁଆଡ଼େ ଗଲେ ତା'ର କୌଣସି ପତା ନାହିଁ କହିଲେ ଚଳେ ।

କେତେ ପୁର୍ନବାସ ବସତିରେ ଲୋକଙ୍କୁ ଧାଡ଼ି ଧାଡ଼ି ଟିଣର ଚାଳିରେ ଫୋପାଡ଼ି ଦିଆଯାଇଛି । ତାହା ଖରାଦିନେ ଚୁଲି ଭିତର ପରି ଗରମ, ଆଉ ଶୀତଦିନେ ହେମଶୀତଳ । କେତେଗୁଡ଼ାଏ ପୁର୍ନବାସ ବସତି ନଈର ଶୁଖିଲା ଶଯ୍ୟାରେ ବସାଯାଇଛି । ବର୍ଷାଦିନେ, ଅଳ୍ପ ସମୟ ପାଇଁ ହେଲେ ବି, ସେହି ନଦୀଗୁଡ଼ିକ ଖରସ୍ରୋତା ହୋଇଉଠନ୍ତି । ନଦୀଶଯ୍ୟାର ଏଭଳି ଅନେକ ପୁର୍ନବାସ

ବସତି ମୁଁ ବୁଲି ଦେଖିଛି । ଟି·ଭି·ରେ ଅନ୍ୟ କେତେକର ଦୃଶ୍ୟ ମଧ୍ୟ ଦେଖିଛି । ଟିଣ ଘରର ପାଣି ଭର୍ତ୍ତି ଚଟାଣରେ ଦ୍ୱୀପ ଭଳି ଦିଶୁଥିବା ଖଟିଆ ଉପରେ କୁନି କୁନି ପିଲାଙ୍କୁ ଚଢ଼େଇ ଭଳି ଯାକିଯୁକି ହୋଇ ଶୀତରେ ଥରିବାର ଦେଖିଛି । ସେମାନଙ୍କର ଭୟାର୍ତ୍ତ, ଜଗୁଆ ଆଖିରେ ସେମାନେ ଦେଖୁଥା'ନ୍ତି ନଈର ଫୁଲନ୍ତା ପାଣିରେ ତାଙ୍କର ଖେଳନା, ବାସନ ଆଦି ଭାସିଯାଉଥିବାର ଏବଂ ତାଙ୍କର କ୍ଷୀଣତନୁ ବାପାମାନେ ସେ ସବୁକୁ ଧରି ରଖିବା ପାଇଁ ଚେଷ୍ଟା କରୁଥିବାର ଦୃଶ୍ୟ ।

ପାଣି ଛାଡ଼ିଗଲା ପରେ ପଛରେ ରହିଯାଏ ଏକ ବିଧ୍ୱସ୍ତ ଦୁନିଆ । ମ୍ୟାଲେରିଆ, ଝାଡ଼ାବାନ୍ତି, କାଦୁଆ ଭୂଇଁରେ ପଡ଼ି ରହିଥିବା ରୋଗଣା ଗାଈଗୋରୁ । ପୁରୁଣା ଘରର ଯେଉଁ ପୁରୁଣା କାଠ ଗଡ଼ି ସବୁକୁ ସ୍ୱପ୍ନ ଭଳି ସେମାନେ ସାଇତି ରଖିଥିଲେ, ସେସବୁ ଏବେ ପାଣି ଖାଇକରି ଖତରା ଓ ମୂଲ୍ୟହୀନ ।

ମଣିବେଲିରୁ ଚାଳିଶଟି ପରିବାର ମହାରାଷ୍ଟ୍ରର ଏକ ପୁର୍ନବାସ ବସତିରେ ଥଇଥାନ ହୋଇଥିଲେ । ସେ ପରିବାରମାନଙ୍କର ପ୍ରଥମ ବର୍ଷରେ ମରିଗଲେ ୩୮ ଜଣ ପିଲା ।

ଇଣ୍ଡିଆନ୍ ଏକ୍ସପ୍ରେସରେ ୨୬·୦୪·୧୯୯୯ରେ ବାହାରିଥିବା ରିପୋର୍ଟ ଅନୁଯାୟୀ ଗୁଜୁରାଟର ଗୋଟିଏ ପୁର୍ନବାସ ବସତିରେ ଗୋଟିଏ ସପ୍ତାହରେ ମରିଛନ୍ତି ୯ ଜଣ ଲୋକ । ଗଣୁଥିବା ଲୋକଙ୍କ ପାଇଁ ତାହା ହେଉଛି ଦିନକୁ ୧·୨୮୭୫ *ପି·ଏ·ପି·* ।

ବିସ୍ଥାପିତ ହୋଇଥିବା ଅନେକ ଲୋକଙ୍କର ଜୀବନ କଟି ଆସିଥିଲା ଘଞ୍ଚ ଜଙ୍ଗଲରେ । ନଗଦ ଟଙ୍କା ବା ବାହାରର ଆଧୁନିକ ଦୁନିଆ ସହିତ ତାଙ୍କର ପ୍ରାୟ କିଛି ବି ସମ୍ପର୍କ ନଥିଲା । ବର୍ତ୍ତମାନ ସେମାନଙ୍କୁ ଦୁଇଟି ମାତ୍ର ବିକଳ୍ପ ମିଳୁଛି – ଘରେ ବସି ଅନାହାରରେ

ମରିବାର ବିକଳ୍ପ, ନହେଲେ କେତେ କିଲୋମିଟର ଦୂରରେ ଥିବା ବଜାରକୁ ଚାଲି ଚାଲି ଯାଇ କାମ ଖୋଜିବା । ଦେଖିବାକୁ ଗଲେ ସେମାନେ ନିଜକୁ ପଣ୍ୟଦ୍ରବ୍ୟ ଭଳି ବଜାରରେ ବିକିବାକୁ ବସିଥା'ନ୍ତି ।

ଜଙ୍ଗଲରୁ ସେମାନେ ନିଜର ସବୁକିଛି ଦରକାରୀ ଜିନିଷ ସଂଗ୍ରହ କରିପାରୁଥିଲେ - ଖାଦ୍ୟ, ଜାଳେଣୀ, ଗୋଖାଦ୍ୟ, ଦଉଡ଼ି, ଧୂଆଁ, ଦାନ୍ତକାଠି, ଔଷଧ, ଘର ତିଆରି ଜିନିଷ । ଏବେ ସେମାନେ ରୋଜଗାର କରୁଛନ୍ତି ଦିନକୁ ଦଶ କିମ୍ବା କୋଡ଼ିଏ ଟଙ୍କା । ଆଉ ସେଥିରେ ତାଙ୍କର ପୂରା ପରିବାରକୁ ବଞ୍ଚିବାକୁ ପଡୁଛି । ନଈ ବଦଳରେ ତାଙ୍କୁ ମିଳିଛି ଗୋଟାଏ ନଳକୂଅ ଯାହାକୁ ପଚାଶ ଥର ଉପର ତଳ କଲେ ବାହାରିବ ଟୋପାଏ ପାଣି । ତାଙ୍କର ଜଙ୍ଗଲୀ ଗାଁରେ କଞ୍ଚା ପଇସା ନଥିଲା, ହେଲେ ସାମାଜିକ ନିରାପତ୍ତା ଥିଲା । ବର୍ଷା ନହେଲେ ଚାଷ ହେଉନଥିଲା ସିନା, ହେଲେ ଜଙ୍ଗଲ ତ ଥିଲା । ଶୁଖିଲା ନଈର କାଦୁଅରେ ମାଛ ତ ଥିଲା । ଗୋରୁଗାଈ ତ ଥିଲେ - ତାହା ଥିଲା ତାଙ୍କର ସ୍ଥାୟୀ ଜମା । ଏସବୁ ବିନା ତାଙ୍କର ଜୀବନ ଓ ମରଣ ଭିତରେ ରହିଛି ମାତ୍ର ମୁହୂର୍ତ୍ତକର ବାଟ । ସେସବୁ



ପୁର୍ନବାସ କଲୋନୀର ଟିଣ ଘର

ଛଡ଼େଇନେଇ ଆମେ ସେମାନଙ୍କୁ ଦେଇଛୁ କ'ଣ? ଟିଣ, ଛାତ ଓ ଅନାହାର ମୃତ୍ୟୁ?

ମୁଁ ଗୁଜୁରାଟର ବରୋଦା ପାଖରେ ଓଦାଜ୍ ପୁର୍ନବାସ ବସତି ବୁଲି ଯାଇଥିଲି। ମୋ ସାଙ୍ଗରେ କଥା ହେଉଥିବା ଲୋକ ଜଣକ କୋଳରେ ଗୋଟିଏ ରୋଗଣା ଛୁଆକୁ ଧରି ଝୁଲାଉଥିଲା। ଛୁଆର ନିଦୁଆ ଆଖି ଉପରେ ଭଣ ଭଣ ହେଉଥିଲେ ପଲ ପଲ ମାଛି। ଆମ ଚାରିପଟେ ପିଲାମାନେ ଘେରିଗଲେ। ସେମାନେ କିନ୍ତୁ ସତର୍କ ରହୁଥିଲେ, ଯେପରି ତାଙ୍କ ଚାଳିର ଅତି ଗରମ ଟିଣ କାନ୍ଥରେ ଲାଗିକରି ତାଙ୍କର ଫୁଙ୍ଗୁଳା ଦେହ ଫୋଟକା ହୋଇନଯିବ। ବସିଥିବା ଲୋକର ମନ ତା' ରୋଗଣା ପିଲାଠାରୁ ଥିଲା ବହୁତ ଦୂରରେ। ସେ ମୋ ଆଗରେ ସେ ଜଙ୍ଗଲରେ ଗୋଟାଉଥିବା ଫଳମାନଙ୍କ ତାଲିକା ତିଆରି କରୁଥିଲା। ସେ ଗଣିଲା ୪୮ ପ୍ରକାରର ବିଭିନ୍ନ ଫଳର ନାଁ। ଆଉ କହିଲା, ସେ ଜାଣିଛି ଯେ ତା' ପାଟିରେ କିମ୍ବା ତା' ପିଲାଙ୍କ ପାଟିରେ କୌଣସି ଫଳର ସ୍ବାଦ ଆଉ ବାଜିବ ନାହିଁ। କାରଣ ତାହା ସେ କିଣିବା ପାଇଁ ସମର୍ଥ ହେବନାହିଁ, ଖାଇବାକୁ ହେଲେ ତାକୁ କେବଳ ସେ ଫଳ ଚୋରୀ କରିବାକୁ ହେବ। ମୁଁ ତାକୁ ଛୁଆର କ'ଣ ହୋଇଛି ବୋଲି ପଚାରିଲି। ସେ କହିଲା ଯେ ଏମିତି ବଞ୍ଚିବା ଅପେକ୍ଷା ପିଲାଟା ମରିଯିବା ବରଂ ଭଲ। ମୁଁ ପିଲାର ମା'କୁ ଏ ବିଷୟରେ ପଚାରିଲି। ସେ ମୋତେ ତବ ତବ ଆଖିରେ ଚାହିଁରହିଲା। ତା' ଜିଭରେ କିଛି ଉତ୍ତର ପଇଟିଲା ନାହିଁ।

ଥଇଥାନ ହୋଇଥିବା ଲୋକଙ୍କୁ ସବୁ କଥା ନୂଆକରି ଶିଖିବାକୁ ପଡୁଛି। ନଖଠାରୁ ନିଶ ପର୍ଯ୍ୟନ୍ତ ସବୁକିଛି ନୂଆ କରି ଜାଣିବାକୁ ପଡୁଛି। କେଉଁଠି ଓ କେମିତି ଝାଡ଼ା ପରିସ୍ରା ଯିବ – ଏଠି ତ ଜଙ୍ଗଲ ନାହିଁ ଯେ ତାକୁ ଉହାଡ଼ କରିବ। ତାଙ୍କୁ ଶିଖିବାକୁ ପଡୁଛି କେମିତି

ବସ୍‌ର ଟିକେଟ୍ କାଟିବ, କେମିତି ନୂଆ ଭାଷାରେ କଥା ହେବ, ଟଙ୍କା ପଇସାରେ କେମିତି କାରବାର କରିବ । ସବୁଠାରୁ ଅଧିକ ଦୁଃଖର କଥା ହେଉଛି ଯେ ସେମାନଙ୍କୁ ଶିଖିବାକୁ ପଡୁଛି ଗୁହାରିଆଙ୍କ ଭଳି କଥା କହିବାକୁ, କାହାକୁ ନିଜର ମାଲିକ ବୋଲି ମାନିବାକୁ, ଆଦେଶ ନେବାକୁ, କେବଳ ପଚରାଗଲେ କଥା କହିବାକୁ ।

ସେମାନଙ୍କୁ ନିଜର ଅଭାବ ଅସୁବିଧା ନେଇ ସର୍ଦ୍ଦାର ସରୋବର ନିଗମ କିମ୍ବା ଅଭିଯୋଗ ନିରାକରଣ କମିଟିକୁ ତିନିଥାକିଆ ଦରଖାସ୍ତ ଲେଖି ଶିଖିବାକୁ ମଧ୍ୟ ପଡୁଛି । ତାଙ୍କ ଅବସ୍ଥା ବିଷୟରେ ପ୍ରତିବାଦ କରିବା ପାଇଁ ଏବେ ଏବେ ୩,୦୦୦ ଲୋକ ଦିଲ୍ଲୀକୁ ଆସିଥିଲେ । ରାତି ସାରା ସେମାନେ ରେଳଗାଡ଼ିରେ ଆସିଲେ ଆଉ ଦିଲ୍ଲୀରେ ରହିଲେ ତତଲା ପିଚୁରାସ୍ତା ଉପରେ । ରାଷ୍ଟ୍ରପତିଙ୍କର ଆଖି ଖରାପ ଥିବାରୁ ସେ ସେମାନଙ୍କୁ ଦେଖା କରିବାକୁ ମନା କଲେ । ସାମାଜିକ ନ୍ୟାୟ ଓ ସଶକ୍ତିକରଣ ମନ୍ତ୍ରୀ ମେନକା ଗାନ୍ଧୀ ତାଙ୍କୁ ଭେଟିଲେ ନାହିଁ, ବରଂ ଲିଖିତ ଅଭିଯୋଗ (କ'ଣ ଲେଖିବେ – *ଆଦରଣୀୟା ମେନକା, ଦୟାକରି ବନ୍ଧ ଗଢ଼ ନାହିଁ । ସଶ୍ରଦ୍ଧ, ଲୋକମାନେ ।*) ଦେବା ପାଇଁ କହିଲେ । ଲୋକମାନେ ସ୍ମାରକୀ ପତ୍ର ଲେଖିକରି ମନ୍ତ୍ରୀଙ୍କୁ ଦେଲାବେଳେ ତାହାକୁ ଇଂରାଜୀରେ ଲେଖି ନଥିବା ହେତୁ ଗାଳି ଖାଇଲେ ।

ଏକ ସ୍ୱୟଂସମ୍ପୂର୍ଣ୍ଣ ତଥା ସ୍ୱାଧୀନ ଅବସ୍ଥାରୁ ଆସି ଆପଣଙ୍କର ଜୀବନ ଯଦି ଏକ ଦୀନ, ଦରିଦ୍ର, ପରାଧୀନ ଅବସ୍ଥାରେ ପହଞ୍ଚେ, ଯେଉଁ ଦୁନିଆ ବିଷୟରେ ଆପଣ କିଛି ବି ଜାଣନ୍ତି ନାହିଁ, ଯଦି ତାହା ସହିତ ଆପଣଙ୍କ ଜୀବନକୁ ଛନ୍ଦି ଦିଆଯାଏ, ତା'ହେଲେ ଆପଣଙ୍କୁ କେମିତି ଲାଗିବ? ଆପଣ କ'ଣ ଗୋଆର ସମୁଦ୍ରକୂଳିଆ ପ୍ରାସାଦ ତ୍ୟାଗ କରି ପାହାଡ଼ଗଞ୍ଜର ବସ୍ତିରେ ରହିବା ପସନ୍ଦ କରିବେ? ନାଁ?

ଜାତୀୟ ସ୍ୱାର୍ଥ ପାଇଁ ମଧ୍ୟ ନୁହେଁ?

ପ୍ରକୃତରେ, କୌଣସି ବି ରାଷ୍ଟ୍ରର ସରକାର ଏଭଳି ଏକ ସମ୍ବେଦନଶୀଳ ଓ ଭଙ୍ଗୁର ଜନଗୋଷ୍ଠୀକୁ ଏଭଳି ଏକ ବ୍ୟାପକ ସଂଖ୍ୟାରେ ଥଇଥାନ କରାଇ ପାରିବେ ନାହିଁ। ଏହି ରାଷ୍ଟ୍ର ପ୍ରାୟୋଜିତ ବ୍ୟବସ୍ଥା ହେବ ଗୋଟିଏ କଅଁଳ ପିଲାର ନଖକୁ କୁରାଢ଼ୀରେ କାଟିବା ଭଳି। ଏହି ବାଟରେ ପିଲାର ଆଙ୍ଗୁଠି ଉଡ଼ାଇ ନଦେଇ ନଖ କାଟିବା ସମ୍ଭବ ନୁହେଁ। ଜମି ବଦଳରେ ଜମି କଥା ଯୁକ୍ତିଯୁକ୍ତ ମନେହେଉଛି ନିଶ୍ଚୟ। କିନ୍ତୁ ଏ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଯିବ କେମିତି? ୨,୦୦,୦୦୦ ଲୋକଙ୍କୁ ଗୋଟିଏ ଜାଗାରୁ ବିସ୍ଥାପିତ କରି (ତା' ଭିତରୁ ୧୧୭,୦୦୦ ଆଦିବାସୀ) ଅନ୍ୟ ଜାଗାରେ ମାନବୀୟ ଧାରାରେ ଥଇଥାନ କରିବା କ'ଣ ସମ୍ଭବ? ତାଙ୍କର ସମାଜକୁ ଅକ୍ଷତ ରଖାଯିବ କିପରି? ଯେଉଁ ଦେଶରେ ଇଞ୍ଚଟିଏ ଜାଗା ପାଇଁ ଲଢ଼େଇ ଲାଗିଯାଏ, ଯେଉଁଠି କଚେରୀରେ ପଡ଼ି ରହିଥିବା ଅଧିକାଂଶ ମାମଲା କେବଳ ଜମିଜମା ଗଣ୍ଡଗୋଳ ସମ୍ପର୍କିତ, ସେଠି କ'ଣ ଏହା ସମ୍ଭବ?

ବିସ୍ଥାପିତ ଲୋକଙ୍କୁ ସ୍ୱାଗତ କରିବା ପାଇଁ କେଉଁଠି ଏତେ ଚାଷ ଉପଯୋଗୀ ଖାଲି ଜାଗା ପଡ଼ିଛି? ସତ କଥା ଏହା ଯେ ଏତେ ଲୋକଙ୍କୁ ଥଇଥାନ କଲା ଭଳି ଜମି ଦେଶରେ ନାହିଁ। କେବଳ ସରକାରୀ ହିସାବରେ ଗୋଟିଏ ବନ୍ଧ ଦ୍ୱାରା ବିସ୍ଥାପିତ ହୋଇଥିବା ଲୋକଙ୍କୁ ମଧ୍ୟ ଥଇଥାନ କରିବା ଅସମ୍ଭବ। ବାକି ୩୨୯୯ ବନ୍ଧର ବିସ୍ଥାପିତଙ୍କ କଥା ପୁଣି କ'ଣ ହେବ? ବିନାଶକୁ ଅପେକ୍ଷା କରୁଥିବା ବାକି ହଜାର ହଜାର ଦୁର୍ଭାଗା ପି.ଏ.ପି.ଙ୍କୁ ନେଇ ଆମେ କରିବା କ'ଣ? ତାଙ୍କୁ କ'ଣ କେବଳ ଭଗବାନଙ୍କ ହାତରେ ଟେକିଦେବା?



ମହେଶ୍ୱର ବନ୍ଧର ଜଳଭଣ୍ଡାରର ପାଣିରେ ବୁଡ଼ିବାକୁ ଯାଉଥିବା ୬୦ଟି ଗାଁମାନଙ୍କ ଭିତରୁ ଜାଲୁଦ୍ ହେଲା ସର୍ବପ୍ରଥମ । ଜାଲୁଦ୍ ଏକ ଆଦିବାସୀ ଗାଁ ନୁହେଁ । ତେଣୁ ସବୁ ସାଧାରଣ ହିନ୍ଦୁ ଗାଁର ଦୁର୍ଭାଗ୍ୟ ଭଳି ଏଠାରେ ମଧ୍ୟ ଜାତିଭିତ୍ତିକ ବିଭେଦ ବେଶ୍ ସ୍ପଷ୍ଟ । ଏଠାରେ ଅଧିକାଂଶ ଜମି ମାଲିକ (ତେଣୁ ପି·ଏ·ପି· ଭାବରେ ସ୍ୱୀକୃତ) ହେଉଛନ୍ତି ରାଜପୁତ୍ ଜାତିର । ତାଙ୍କ ଜମି ଭାରତର ଉର୍ବରତମ ଚାଷଜମି ଭିତରେ ଗଣା । ତାଙ୍କ ଘର ବସ୍ତା ବସ୍ତା ଧାନ, ଗହମ, ଡାଲି ଆଦିରେ ଭର୍ତ୍ତି । ସେମାନେ ନିଜ ବେଉସା ଓ ଜମିକୁ ନେଇ ଗର୍ବ କରନ୍ତି ଯେ, ପରିସ୍ଥିତି ଏଭଳି ଦୁଃଖଦ ନହୋଇଥିଲେ, ଜଣକୁ ହୁଏତ ବିରକ୍ତ ଲାଗନ୍ତା । ବନ୍ଧ କାମର ଡାଇନାମାଇଟ୍ ବିସ୍ଫୋରଣର ପ୍ରଭାବରେ ତାଙ୍କର ଘରସବୁ ଫାଟିବାକୁ ଆରମ୍ଭ କଲାଣି ।

ବନ୍ଧ ପାଖରେ ଥିବା ବାରଟି ଦଳିତ ପରିବାରର ଜମି ସରକାର ଏହା ଭିତରେ ନିଜ ହାତକୁ ନେଇ ସାରିଛନ୍ତି । ସେମାନେ ପ୍ରଥମେ ଜମି ଦେବାକୁ ମନା କରିବାରୁ ତାଙ୍କ ପାଣି ପାଇପ୍‌ରେ ସିମେଣ୍ଟ ଭରି ଦିଆଗଲା । ଫଳନ୍ତା ଫସଲକୁ ବୁଲ୍‌ଡୋଜର୍ ଲଗାଇ ଧ୍ୱଂସ କରି ଦିଆଗଲା । ପୁଲିସ୍ ବଳ ପ୍ରୟୋଗ କରି ଜମି ଦଖଲ କରିନେଲେ । ପୂରା ୧୨ଟିଯାକ ପରିବାର ବର୍ତ୍ତମାନ ଭୂମିହୀନ ଏବଂ ଦିନ ମଜୁରିଆ ।

ଜାଲୁଦ୍‌ର ବିସ୍ଥାପିତ ଲୋକଙ୍କୁ ନଈଠାରୁ ଆଉ କେତେ କିଲୋମିଟର ଦୂରରେ ସାମରାଜ୍ ନାମକ ଏକ ଗାଁ ପାଖରେ ଥଇଥାନ କରିବାର ଯୋଜନା ସରକାର କରିଛନ୍ତି । ସାମରାଜ୍ ଗାଁର ଲୋକେ ମୂଖ୍ୟତଃ ଆଦିବାସୀ ବା ଦଳିତ । ବିସ୍ଥାପିତ ଲୋକଙ୍କ ପାଇଁ ଏ ଗାଁ ପାଖରେ ବେଶ ଲମ୍ବା ଚଉଡ଼ା ଖଣ୍ଡେ ଜମି ଠିକ୍ କରି ବାଡ଼ ଘେରାଇ ରଖାଯାଇଛି । ହେଲେ ଜମି ଖଣ୍ଡକ ପୂରା ପଥୁରିଆ ମୁଣ୍ଡିଆଟିଏ, ଏତେ ତେଣେ କିଛି ଟାଣୁଆ ଘାସ ବା କଣ୍ଟାଳିଆ ବୁଦା ସେଠି ଅଛି । ଏବେ ସେ ଜମି ଉପରେ କେତେ ଟ୍ରକ ଭଲ ମାଟିର ପତଳା ଆସ୍ତରଣଟିଏ ବିଛା ଯାଉଥିଲା । ଯେପରି ତାହା ଭଲ ମାଟିର ଜମି ପରି ଦେଖାଯିବ । ଜମିର କାହାଣୀ ଶୁଣନ୍ତୁ । ଏସ୍. କୁମାର କମ୍ପାନୀ ତରଫରୁ ଜିଲ୍ଲାପାଳ ଏ ମୁଣ୍ଡିଆ ଖଣ୍ଡକ ଅଧିଗ୍ରହଣ କଲେ । ଜମି ଖଣ୍ଡକ ସରକାରଙ୍କର ନଥିଲା । ଥିଲା ଗାଁ'ର ଯାହାକୁ କି ଗାଁ ଲୋକେ ଗୋଚର ଭାବରେ ବ୍ୟବହାର କରୁଥିଲେ । ଏ ଜମି ସହିତ ଦଶ ଜଣ ଦଳିତଙ୍କର ଜମି ମଧ୍ୟ ସରକାର ହାତକୁ ନେଲେ । ତାଙ୍କର ଜମି ପାଇଁ କୌଣସି କ୍ଷତିପୂରଣ ଦିଆଯାଇନାହିଁ ।

ଗାଁ ଲୋକଙ୍କର ମୁଖ୍ୟ ଜୀବିକା ଥିଲା ପଶୁପାଳନ । ଗୋଚର ଜମି ଚାଲିଗଲା ପରେ ସେମାନଙ୍କୁ ବାଧ୍ୟ ହୋଇ ନିଜର ଗାଈଗୋରୁ ସବୁ ବିକିବାକୁ ପଡ଼ିଲା । ଗାଁ ମୁଣ୍ଡରେ ଏକ ଛୋଟ ହ୍ରଦ ଅଛି । ଖରାଦିନେ ସେ ହ୍ରଦର ଶୁଖିଲା ଜମିରେ ଧାନ ଓ କଖାରୁ ଆଦି ଚାଷ କରି ଲୋକେ ଦୁଇ ପଇସା ପା'ନ୍ତି । ଏସ୍. କୁମାର କମ୍ପାନୀ ସେ ହ୍ରଦ କୂଳର କାଦୁଅ ଖୋଳିନେଇ ମୁଣ୍ଡିଆର ଗୋଚର ଜମି ଉପରେ (ଯୋହାକୁ ଜାଲୁଦ୍‌ର ଲୋକମାନେ ନେବା ପାଇଁ ଚାହାନ୍ତି ନାହିଁ) ବିଛାଇ ଦେଲେ । ବର୍ତ୍ତମାନ ହ୍ରଦର ଶୁଖିଲା ତୀଖା ଶଯ୍ୟାରେ ଖରାଦିନିଆ ଚାଷ ଅସମ୍ଭବ । ସାମ୍‌ରାଜ୍‌ରେ ଲୋକେ ଆଗରୁ ଗରିବ

ଥିଲେ, ଏବେ ସେମାନେ ନିଃସ୍ୱ । ଏବେ ଅନାହାର ମୃତ୍ୟୁ ଛଡ଼ା ତାଙ୍କ ଆଗରେ କୌଣସି ବିକଳ୍ପ ନାହିଁ । ଏ ପରିସ୍ଥିତି ସୃଷ୍ଟି ହୋଇଛି ଏଇଥିପାଇଁ ଯେ ଜର୍ମାନ୍ ଋଣଦାତା, ସୁପ୍ରିମକୋର୍ଟ ଓ ଅନ୍ୟ ଯେ କେହି 'ସଫଳ ଭାବରେ ଥଇଥାନ' କରାଯାଇଥିବା ଲୋକଙ୍କ ଜମି ଦେଖିପାରିବେ ।

ଏହା ହିଁ ଭାରତର କାମ କରିବାର ଧାରା । ଏ ହେଲା ମହେଶ୍ୱର ବନ୍ଧର ଜନ୍ମବୃତ୍ତାନ୍ତ । ମହେଶ୍ୱର ବନ୍ଧର ବୁଡ଼ି ଅଞ୍ଚଳର ପ୍ରଥମ ଗାଁ'ର କାହାଣୀ ହେଲା ଏଇଆ । ଏ ବନ୍ଧ ଦ୍ୱାରା ବୁଡ଼ିବାକୁ ଯାଉଥିବା ବାକି ୫୯ଟି ଗାଁ'ର ଅବସ୍ଥା କ'ଣ ହେବ? ଏ ବନ୍ଧ ଉପରେ ଶନିଦଶା ଲାଗିରହୁ । ଏସ୍. କୁମାର କମ୍ପାନୀର ପୁଞ୍ଜିପତିଙ୍କ ଉପରେ ତାଙ୍କ ନିଜ ବୁଲ୍‌ଡୋଜର ମାଡ଼ିଯାଉ ।

ଏ ପ୍ରକାର ବ୍ୟବହାରକୁ କେହି ବି ଯଥାର୍ଥ ଭାବିବ ନାହିଁ ।

ଏପରି ଏକ ପରିସ୍ଥିତିରେ ପୁର୍ନବାସକୁ ନେଇ କୌଣସି ବିତର୍କକୁ ପ୍ରଶ୍ରୟ ଦେବାର ଅର୍ଥ ହେଲା ନ୍ୟାୟକୁ ଏଡ଼ାଇଯିବା । ୨,୦୦,୦୦୦ ଲୋକଙ୍କୁ ବିସ୍ଥାପିତ କରି ୪ କୋଟି ଲୋକଙ୍କ ପାଖକୁ ପାଣି ନେବାର (ବା ନେବାର ଛଳନା କରିବାର) ଏତେ ବଡ଼ ଧରଣର ଆୟୋଜନ ଠିକ୍ ମନେହୁଏ ନାହିଁ । ଏ ତ ପୂରାପୂରି ଫାସିବାଦୀ ଗଣିତ । ଏତେ ବଡ଼ ବଡ଼ ସଂଖ୍ୟା ଛୋଟ ଛୋଟ ସତ କାହାଣୀମାନଙ୍କର ଗଳା ଚିପି ହତ୍ୟା କରେ, ତଥ୍ୟକୁ ଟୁକୁଡ଼ା ଟୁକୁଡ଼ା କରିପକାଏ, ମିଥ୍ୟା ଚମକରେ ଅତି ବିଚାରବନ୍ତ ଲୋକଙ୍କୁ ଦୃଷ୍ଟିହୀନ କରିପକାଏ ।



ମୁଁ ନର୍ମଦା ଉପତ୍ୟକାରେ ୧୯୯୯ ମସିହା ମାର୍ଚ୍ଚ ମାସର ଶେଷ ଆଡ଼କୁ ଆସି ପହଞ୍ଚିଲି । ସେତେବେଳକୁ ସୁପ୍ରିମକୋର୍ଟ ସର୍ଦ୍ଦାର ସରୋବର ନିର୍ମାଣ ଉପରୁ ରହିତାଦେଶ ଉଠାଇବାର ମାସେ ହେଲାଣି । ସେତେବେଳକୁ ମୁଁ ଏହି ବନ୍ଧ ବିଷୟରେ 'ଗୁପ୍ତ' ସରକାରୀ ଦଲିଲ ସମେତ ଯେତେ ଯାହା ପାଇଲି, ସେ ସବୁକିଛି ପଢ଼ିସାରିଥିଲି । ତେଣୁକରି ପୂରା ମାମଲାର ସବୁ ଦିଗ ଉପରେ ମୋର ବେଶ୍ ଧାରଣା ହୋଇଯାଇଥିଲା । ମୋ ଆଖି ଆଗରେ ସବୁ କିଛି ଏକ ଦୁଃଖାନ୍ତ ନାଟକ ଭଳି ଦିଶିଯାଉଥିଲା, ଯାହାର ଅଭିନେତାମାନଙ୍କୁ ମୁଁ ଆଗରୁ ଭେଟି ସାରିଛି । ଯଦି ମୁଁ ଆଗରୁ ପଢ଼ି ପ୍ରସ୍ତୁତ ନ ହୋଇ ନର୍ମଦା ଉପତ୍ୟକାକୁ ଆସିଥାଆନ୍ତି ତା'ହେଲେ ମୁଁ ମାମଲାର କିଛି ବି ବୁଝିପାରିନଥା'ନ୍ତି । କାରଣ ସେ ଉପତ୍ୟକାରେ ରହିଛି କାହାଣୀ ଭିତରେ କାହାଣୀ । ଆଉ ଲୋକଙ୍କର ଦୁଃଖର ସୁଅରେ ବିପର୍ଯ୍ୟୟର ସ୍ପଷ୍ଟତା ହଜିଯିବାଟା ବେଶ୍ ସହଜ ।

ମୋ ଗସ୍ତ ମୁଁ ଶେଷ କଲି କେଭାଡ଼ିଆ କଲୋନୀରେ । କେଭାଡ଼ିଆ କଲୋନୀ, ଯେଉଁଠି ୩୮ବର୍ଷ ତଳେ କାହାଣୀର ଆରମ୍ଭ ହୋଇଥିଲା । ଗୁଜୁରାଟ ସରକାର ୩୮ବର୍ଷ ତଳେ ଏଠାରେ ସର୍ଦ୍ଦାର ସରୋବରର ନିର୍ମାଣ ପାଇଁ ଭିତ୍ତିଭୂମି ତିଆରି କରିବାକୁ ଆରମ୍ଭ କଲେ । ତେଣୁ ଏଠି ବନ୍ଧର ଅତିଥି ଭବନ, ଅଫିସ୍ ଘର, ଇଞ୍ଜିନିୟର ଓ ଅନ୍ୟ କର୍ମଚାରୀମାନେ ରହିବା ପାଇଁ ଘର, ବନ୍ଧ ତିଆରି ଜାଗା ପର୍ଯ୍ୟନ୍ତ ରାସ୍ତା, ଗୋଦାମ ଘର ଇତ୍ୟାଦି ତିଆରି ହେଲା ।

ସର୍ଦ୍ଦାର ସରୋବର ଜଳଭଣ୍ଡାର ଏବଂ ଲକ୍ଷ ଲକ୍ଷ ଲୋକଙ୍କର ଶୋଷ ମାରିବାକୁ ଯାଉଥିବା ଗୁଜୁରାଟର 'ଜୀବନରେଖା' ଓ୍ୱଣ୍ଡର କେନାଲର ମିଳନ ସ୍ଥଳରେ ରହିଛି କେଭାଡ଼ିଆ କଲୋନୀ । କେହି ଏ କଥା ଜାଣନ୍ତି ନାହିଁ, କିନ୍ତୁ କେଭାଡ଼ିଆ କଲୋନୀ ହେଲା ଦୁନିଆର ଚାବିକାଠି । ସେଠାକୁ ଗଲେ ସବୁ ରହସ୍ୟ ତୁମ ଆଗରେ ଖୋଲିଦିଆଯିବ ।

୧୯୬୧ ମସିହାର ଏକ ଶୀତୁଆ ଦିନ । କୋଠିଏ ନାମକ ଏକ ଗାଁରେ ଜଣେ ସରକାରୀ କର୍ମଚାରୀ ଆସି ସୂଚନା ଦେଲେ ଯେ ଗୋଟିଏ ହେଲିପ୍ୟାଡ୍ ପାଇଁ ଗାଁ ବାଲାଙ୍କର ଜମିରୁ କିଛି ଦରକାର ହେବ । ଅଳ୍ପ ଦିନ ଭିତରେ ବୁଲ୍‌ଡୋଜର ଆସି ଗାଁ କ୍ଷେତରେ ଠିଆ ହୋଇଥିବା ଫଳନ୍ତା ଫସଲକୁ ମାଟିରେ ମିଶାଇ ଦେଲା । ଗାଁ ଲୋକଙ୍କଠାରୁ କାଗଜରେ ଦସ୍ତଖତ କରାଇ ନିଆଗଲା ଏବଂ ତାଙ୍କୁ କିଛି ଟଙ୍କା ଦିଆଗଲା । ଲୋକେ ଭାବିଲେ କି ଟଙ୍କାଟା ହେଲା ନଷ୍ଟ ହୋଇଥିବା ଫସଲ ପାଇଁ କ୍ଷତିପୂରଣ । ହେଲିପ୍ୟାଡ୍ ତିଆରି ହେଲା । ଆଉ ଅଳ୍ପ ଦିନ ପରେ ଗୋଟିଏ ହେଲିକପ୍‌ଟର ଆସି ସେଠାରେ ଓହ୍ଲାଇଲା ଏବଂ ପ୍ରଧାନମନ୍ତ୍ରୀ ନେହେରୁ ସେଥିରୁ ବାହାରିଲେ । ହେଲେ ପୁଲିସ ତାଙ୍କୁ ଘେରିଥିବାରୁ ଗାଁର ଅଧିକାଂଶ ଲୋକ ତାଙ୍କୁ ଦେଖିବାର ସମ୍ଭାବନା ନଥିଲା । ସେ ଗୋଟାଏ ବୋତାମ ଚିପିଲେ ଯାହା ଫଳରେ କି ନଈ ସେ ପାରିରେ ଏକ ବିସ୍ଫୋରଣ ହେଲା । ବିସ୍ଫୋରଣ ପରେ ସେ ପୁଣି ଉଡ଼ି ଚାଲିଗଲେ । ଏ ଘଟଣାଟି ଥିଲା ସର୍ଦ୍ଦାର ସରୋବର ବନ୍ଧର ପ୍ରଥମ ଅବତାରର ଉଦ୍‌ଘାଟନ ଉତ୍ସବ ।

ନେହେରୁ କ'ଣ କେବେ ଜାଣିପାରିଥିବେ ଯେ ସେ ଚିପିଥିବା ବୋତାମ ଭିତରୁ ବାହାରିବ ଏକ ନରଭକ୍ଷୀ ପିଶାଚ ?

ନେହେରୁ ଗଲା ପରେ ସେ ଜାଗାରେ ଗୁଜୁରାଟ ସରକାର

ସଦଳବଳେ ପହଞ୍ଚିଗଲେ । ସରକାର ୬ଟି ଗାଁର ୯୫୦ଟି ପରିବାରର ୧୬୦୦ ଏକର ଜମି ହାତକୁ ନେଲେ । ଏ ଲୋକମାନେ ଥିଲେ ତଡ୍‌ଭି ଆଦିବାସୀ ସମ୍ପ୍ରଦାୟର । ହେଲେ ବରୋଦା ଭଳି ବଡ଼ ସହର ପାଖରେ ରହୁଥିବାରୁ ବଜାର ଅର୍ଥନୀତି ବିଷୟରେ ତାଙ୍କର ଅଳ୍ପ ବହୁତ ଧାରଣା ଥିଲା । ତାଙ୍କୁ ନୋଟିସ ପଠାଗଲା ଯେ ତାଙ୍କୁ ଜମି ବଦଳରେ ନଗଦ ପଇସା ଓ ବନ୍ଧ ତିଆରି ସମୟରେ କାମ ଦିଆଯିବ । ଏ ନୋଟିସ୍ ପରେ ଲୋକଙ୍କ ପାଇଁ ଦୁଃସ୍ୱପ୍ନ ଆରମ୍ଭ ହେଲା । ସେଠାକୁ ମାଳ ମାଳ ଟ୍ରକ୍ ଏବଂ ବୁଲ୍‌ଡୋଜର୍ ମାଡ଼ିଆସିଲେ । ଜଙ୍ଗଲ ସଫା କରିଦିଆଗଲା, ଠିଆ ଫସଲ ନଷ୍ଟ କରି ଦିଆଗଲା । ସବୁକିଛି ରୂପାନ୍ତରିତ ହୋଇଗଲା ଗାଡ଼ି, ଯନ୍ତ୍ରୀ, ଇସ୍ପାତ ଏବଂ ସିମେଣ୍ଟର ଏକ ଘୂର୍ଣ୍ଣିରେ ।

ମୋହନ ଭାଇ ତଡ୍‌ଭିର ଆଖି ଆଗରେ ତା'ର ୮ ଏକର ଜମିର ଯଅ, କୋଳଥ ଓ କପା ଫସଲ ନଷ୍ଟ କରିଦିଆଗଲା । ଦିନକ ଭିତରେ ଜଣେ ଜମି ମାଲିକ ଦିନ ମଜୁରିଆ ପାଲଟିଗଲା । ତିନି ବର୍ଷ ପରେ ମୋହନ ଭାଇକୁ ତିନୋଟି କିସ୍ତିରେ ଏକର ପିଛା ୨୫୦ ଟଙ୍କା କ୍ଷତିପୂରଣ ମିଳିଲା ।

ତେର୍‌ସୁଖ୍ ଭାଇ ଭେଶା ଭାଇର ବାପାକୁ ପାଞ୍ଚ ଏକର ଜମି, ଘର ତିହ୍ର, ଠିଆ ଫସଲ, ଫଳନ୍ତି ଗଛ ବଦଳରେ ୩୫୦୦ ଟଙ୍କା କ୍ଷତିପୂରଣ ମିଳିଲା । ତେରସୁଖ୍ ଭାଇ ପିଲା ହୋଇଥିଲା ବେଳେ ବାପାର ହାତ ଧରି ଜିଲ୍ଲା ସଦର ମହକୁମା ରାଜପିପ୍‌ଲାକୁ ଚାଲି ଚାଲି ଯିବାର କଥା ତା'ର ସ୍ପଷ୍ଟ ମନେ ଅଛି । ତହସିଲଦାର ଅଫିସ୍‌ରେ ପଶିଲା ବେଳକୁ ସେମାନେ ଖୁବ୍ ଡରି ଯାଇଥିଲେ । ସେଠାରେ ତାଙ୍କୁ ତାଙ୍କର କ୍ଷତିପୂରଣ ନୋଟିସ୍ ଦାଖଲ କରି ରସିଦରେ ଦସ୍ତଖତ କରିବାକୁ କୁହାଗଲା । ଯେହେତୁ ସେମାନେ ନିରକ୍ଷର ଥିଲେ, ରସିଦ

ଯେ କେତେ ଟଙ୍କା ପାଇଁ ଥିଲା, ସେ କଥା ଜାଣିବାର ଉପାୟ ତାଙ୍କର ନଥିଲା ।

ସମସ୍ତଙ୍କୁ କ୍ଷତିପୂରଣ ଆଣିବା ପାଇଁ ରାଜ୍‌ପିପ୍‌ଲା ଯିବାକୁ ପଡୁଥିଲା । ହେଲେ ସମସ୍ତଙ୍କୁ ଡକା ହେଉଥିଲା ଭିନ୍ନ ଭିନ୍ନ ଦିନ, ଅଲଗା ଅଲଗା ଭାବରେ । ତେଣୁ କଥାବାର୍ତ୍ତା ହୋଇ ଅସଲ କଥା ଜାଣିବାର ବା କିଛି କରିବାର କୌଣସି ବାଟ ନଥିଲା ।

ଧୀରେ ଧୀରେ ଧୂଳି ଓ ବୁଲ୍‌ଡୋଜର୍‌ର ଉହାଡ଼ରୁ ଗୋଟାଏ ଅସୁନ୍ଦର ଅସ୍ପଷ୍ଟ ଆକୃତି ରୂପ ନେବାକୁ ଆରମ୍ଭ କଲା । ତାହା ଥିଲା କେଭାଡ଼ିଆ କଲୋନୀ । ଧାଡ଼ି ଧାଡ଼ି ଅସୁନ୍ଦର ସିମେଣ୍ଟ ଫ୍ଲାଟ୍, ଅଫିସ୍, ଅତିଥି ଭବନ, ରାସ୍ତା ଆଦିର ସମାହାର । ବଡ଼ ବନ୍ଧ ତିଆରି ପାଇଁ ଦରକାରୀ ଅସୁନ୍ଦର, ଲାସ୍ୟହୀନ ଭିତ୍ତିଭୂମି । କେଭାଡ଼ିଆ ଗାଁର ଲୋକଙ୍କ ଘର ଭାଙ୍ଗି ଦିଆଯାଇ ତାଙ୍କୁ କଲୋନୀର ଗୋଟାଏ କୋଣକୁ ଠେଲି ଦିଆଗଲା । ଆଜି ପର୍ଯ୍ୟନ୍ତ ସେମାନେ ନିଜର ଜମି ଉପରେ ହିଁ ବସ୍ତି ବାସିନ୍ଦାଙ୍କ ପରି ରହିଆସିଛନ୍ତି । ଯେଉଁମାନେ ବିରୋଧ କଲେ ସେମାନଙ୍କୁ ପୁଲିସ୍ ଓ କମ୍ପାନୀର ଧମକ ମିଳିଲା । ଲୋକେ ମୋତେ କହିଲେ କି କଣ୍ଟ୍ରାକ୍‌ଟରର ମୁଖ୍ୟ ଦପ୍ତରରେ ପୁଲିସ୍ ହାଜତ ଭଳି ଗୋଟାଏ ହାଜତ ଅଛି । ସେ ହାଜତରେ ଅମାନିଆ ଗାଁ ବାଲାଙ୍କୁ ବାନ୍ଧିରଖି ମାରଧର କରାଯାଏ ।

*କେଭାଡ଼ିଆ କଲୋନୀ ତିଆରିରେ ବିସ୍ଥାପିତ ହୋଇଥିବା ଲୋକମାନେ ଗୁଜୁରାଟ ସରକାରର ପୁନର୍ବାସ ଯୋଜନା ଅନୁସାରେ ପ୍ରକଳ୍ପ ପ୍ରଭାବିତ ନୁହନ୍ତି ।*

ତାଙ୍କ ଭିତରୁ କେତେଜଣ ଅଫିସରଙ୍କ ବଙ୍ଗଳାରେ ଚାକର । ଆଉ କେତେ ଜଣ ନିଜ ଜମି ଉପରେ ଠିଆ ହୋଇଥିବା ଅତିଥି



**କେଭାଡ଼ିଆ କଲୋନୀର ଲୋକମାନେ ତାଙ୍କ ନିଜ ଗାଁରେ ହିଁ ଶରଣାର୍ଥୀ । ସେମାନେ ଖୋଲାରେ ଶୋଉଥିଲା ବେଳେ ପଛରେ ବନ୍ଧ କର୍ମଚାରୀଙ୍କ ପାଇଁ ତିଆରି ହୋଇଥିବା ହଷ୍ଟେଲ ଅବ୍ୟବହୃତ ହୋଇ ପଡ଼ିଛି ।**

ଭବନରେ ପରିଚାରକ । ଏହାଠାରୁ ଅଧିକ ଦୁଃଖଦାୟକ କଥା ଆଉ କ'ଣ ହୋଇପାରେ ?

ଯାହାର ଅଳ୍ପ କିଛି ଜମି ବଞ୍ଚିଯାଇଥିଲା ସେମାନେ ସେ ଜମିରେ ଚାଷ କରିବା ପାଇଁ ଚେଷ୍ଟା କଲେ । ହେଲେ କେଭାଡ଼ିଆ ନଗରପାଳିକା ସହରର ମଇଳା ସଫା କରିବା ପାଇଁ ଘୁଷୁରୀ ଖୋଲା ଛାଡ଼ିଦେଲେ । ଘୁଷୁରୀ ସହରର ମଇଳା ଖାଇଲେ ତ ଖାଇଲେ । ହେଲେ ତା' ସହିତ ଗାଁର ଫସଲ ମଧ୍ୟ ଖାଇ ଧ୍ୱଂସ କରିଦେଲେ ।

ତିରିଶି ବର୍ଷ ପରେ ୧୯୯୨ରେ ସରକାର ହେକ୍ଟର ପିଛା ୧୨,୦୦୦ ଟଙ୍କା (ସର୍ବାଧିକ ୩୬,୦୦୦ ଟଙ୍କା) କ୍ଷତିପୂରଣ ଦେବା ପାଇଁ ରାଜି ଅଛନ୍ତି । ହେଲେ ସର୍ତ୍ତ ହେଲା ଯେ ଲୋକଙ୍କୁ ନିଜର ଘର

ଘୁଷ୍ଣା ଛାଡ଼ି ଦୂରକୁ ଚାଲିଯିବାକୁ ପଡ଼ିବ । କିନ୍ତୁ ଅସଲ କଥା ହେଉଛି ଏହା ଯେ ଆଗରୁ ଅଧିଗୃହିତ ଜମିର ଶତକଡ଼ା ଚାଳିଶ ଭାଗ କାମରେ ନ ଲାଗି ପଡ଼ିରହିଛି । ସରକାର ନିଜ ପାଇଁ ଅଦରକାରୀ ଏହି ଜମି ଲୋକଙ୍କୁ ଫେରାଇବା ପାଇଁ ରାଜି ନୁହନ୍ତି । ଦେବୀବେନ୍ ନାମକ ଜଣେ ବିଧବାଠାରୁ ଅଧିକୃତ ୧୧ ଏକର ଜମି ସ୍ୱାମୀ ନାରାୟଣ ଟ୍ରଷ୍ଟ ବୋଲି ଏକ ବଡ଼ ଧାର୍ମିକ ସଂସ୍ଥାକୁ ସରକାର ହସ୍ତାନ୍ତର କରିଦେଇଛନ୍ତି । ସେ ଜମିର ଗୋଟାଏ ଛୋଟ ଅଂଶରେ ଟ୍ରଷ୍ଟ ଗୋଟିଏ ଛୋଟିଆ ସ୍କୁଲ ଚଳାଏ । ବାକିତକ ଜମିର ଫସଲ ଟ୍ରଷ୍ଟ ଭୋଗ କରେ । ଦେବୀବେନ୍ ନିଜ ଜମିର ଫସଲକୁ ତାରବାଡ଼ ଦେଇ ଚାହିଁରହିବା ଛଡ଼ା ଆଉ କିଛି କରିପାରିବ ନାହିଁ ।

ଗୋରା ଗାଁରେ ଗାଁ ଲୋକଙ୍କୁ ତଡ଼ି ଦେଇ ୨୦୦ ଏକର ଜମି ଅଧିକୃତ ହୋଇ ଫ୍ଲାଟ୍ ତିଆରି ହୋଇଥିଲା । ସେ ଫ୍ଲାଟ୍ ବର୍ଷ ବର୍ଷ ଧରି ଖାଲି ପଡ଼ିଲା । ଶେଷକୁ ସରକାର ସେ କୋଠାକୁ ଜୟପ୍ରକାଶ ଆସୋସିଏଟ୍ (ବନ୍ଧ ତିଆରି କଣ୍ଟ୍ରାକ୍‌ଟର) କମ୍ପାନୀକୁ ନାମକୁ ମାତ୍ର ଭଡ଼ାରେ ଦେଇଦେଲେ । ବର୍ତ୍ତମାନ ଜୟପ୍ରକାଶ ଆସୋସିଏଟ୍ ସେଇ କୋଠାକୁ ଭଡ଼ା ଲଗାଇ ମାସକୁ ୩୨,୦୦୦ ଟଙ୍କା ପାଉଛି । ଜୟପ୍ରକାଶ ଆସୋସିଏଟ୍ ହେଲେ ଭାରତର ସବୁଠୁ ବଡ଼ ବନ୍ଧ ତିଆରି କଣ୍ଟ୍ରାକ୍‌ଟର । ଏହି ସଜା ଦେଶ ନିର୍ମାଣକାରୀ କମ୍ପାନୀ ହେଉଛି ଦିଲ୍ଲୀର ସିଦ୍ଧାର୍ଥ କଣ୍ଟିନେଣ୍ଟାଲ ଓ ବସନ୍ତ କଣ୍ଟିନେଣ୍ଟାଲ ହୋଟେଲ ଦୁଇଟିର ମାଲିକ ।

ଜଳଭଣ୍ଡାରରେ ଏକ ପ୍ରାଚୀନ ଶୂଳପାଣେଶ୍ୱର ମନ୍ଦିର ବୁଡ଼ି ଯାଇଛି । ଏବେ ପ୍ରାୟ ତିରିଶି ଏକର ଜମିରେ ପି.ଡବ୍ଲୁ.ଡି. ସିମେଣ୍ଟରେ ତାହାର ଏକ ଉଦ୍ଭଟ ପ୍ରତିରୂପ ବସାଇଛି । ଯେଉଁ ରାଜନୈତିକ ଗୋଷ୍ଠୀ ଗୋଟାଏ କ୍ଷିତିହୀନ ମନ୍ଦିରକୁ ଖୋଳି ବାହାର କରିବା ପାଇଁ



ଦିଅଁ ଦେବତା ବି ଅସହାୟ
ପ୍ରାଚୀନ ଶୂଳପାଣେଶ୍ୱର ମନ୍ଦିର ଏବେ ଜଳଭଣ୍ଡାରର ଅତଳ ଗର୍ଭରେ ।

ଗୋଟାଏ ପୁରୁଣା ମସ୍‌ଜିଦ୍ ଭାଙ୍ଗି ଦେଶକୁ ଦଙ୍ଗା ମୁହଁକୁ ଠେଲିଦେଇପାରେ, ସେହିମାନେ ଆଜି ତୀର୍ଥଯାତ୍ରାର ପବିତ୍ର ରାସ୍ତା ଓ ଶହ ଶହ ବର୍ଷ ଧରି ପୂଜା ପାଉଥିବା ଅସଂଖ୍ୟ ପୁରୁଣା ମନ୍ଦିରକୁ ବୁଡ଼ାଇଦେବା ପାଇଁ ପଛାଉ ନାହାନ୍ତି । ଆଦିବାସୀମାନଙ୍କ ପାଇଁ ପବିତ୍ର ପାହାଡ଼, ତୋଟା, ଉପାସନା ପୀଠ, ଦେବାଦେବୀଙ୍କର ଆବାସ ଆଦିକୁ ଧ୍ୱଂସ କରିବାରେ ତାଙ୍କର କୌଣସି ଦ୍ୱିଧା ଆସୁନାହିଁ ।

ଭାରତରେ ପୁରାତନ ପ୍ରସ୍ତର ଯୁଗରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ମଣିଷ ବସବାସ କରୁଥିବାର ପ୍ରମାଣ ରହିଥିବା ଏକମାତ୍ର ଅଞ୍ଚଳ ହେଉଛି ନର୍ମଦା ଉପତ୍ୟକା । ଏହାର ସୂଚନା ଦେଉଥିବା ଅସଂଖ୍ୟ ଜୀବାଶ୍ମ, କ୍ଷୁଦ୍ର ପ୍ରସ୍ତର କଳାକୃତି

(ମାଇକ୍ରୋଲିଥ୍), ପ୍ରାଚୀନ ଗୁମ୍ଫା ଚିତ୍ର ଆଦି କେବଳ ଏହି ଉପତ୍ୟକାରୁ ହିଁ ମିଳିଛି । ଇତିହାସର ଏହି ଏନ୍ସାଇକ୍ଲୋପିଡ଼ିଆକୁ ବୁଡ଼ାଇ ଧ୍ୱଂସ କରିଦେବା ଆଗରୁ ଥରେ ହେଲେ କାହାର ଚିନ୍ତା ଆସୁନାହିଁ ।

ଏପରି ଅବସ୍ଥାରେ କେହି କହି ପାରିବ ବା କ'ଣ ?

କେଭାଡ଼ିଆ କଲୋନୀର ସବୁଠାରୁ ବଡ଼ ଅସଭ୍ୟ ପ୍ରହସନ ହେଉଛି ଏହାର ବନ୍ୟପ୍ରାଣୀ ସଂଗ୍ରହାଳୟ । ଶୂଳପାଣେଶ୍ୱର ଅଭୟାରଣ୍ୟ ବ୍ୟାଖ୍ୟାନ କେନ୍ଦ୍ରକୁ ଗଲେ ଆପଣଙ୍କୁ ସଂରକ୍ଷଣ ପ୍ରତି ସରକାରୀ ଅଙ୍ଗୀକାରର ସାମଗ୍ରିକ ସୂଚନା ତତ୍‌କ୍ଷଣାତ୍ ମିଳିଯିବ ।

ସର୍ଦ୍ଦାର ସରୋବର ବନ୍ଧ ପୂରା ଉଚ୍ଚତାରେ ପହଞ୍ଚିଲା ବେଳକୁ ତାହା ୧୩୦ ବର୍ଗ କି.ମି. ଅଞ୍ଚଳର ଘଞ୍ଚ ଜଙ୍ଗଲକୁ ବୁଡ଼ାଇ ନଷ୍ଟ କରିଦେବ । ଅବଶ୍ୟ ବନ୍ଧ ତିଆରି ଆରମ୍ଭ ହେବା ଦିନରୁ ଗଛ କଟା ଚାଲିଥିବାରୁ ସେଠାରେ ଆଉ ବେଶି କିଛି ଜଙ୍ଗଲ ବାକି ନାହିଁ । ଜଳଭଣ୍ଡାରରେ ବୁଡ଼ିଯିବା ଫଳରେ ଜୈବ ବିବିଧତା ଏବଂ ବନ୍ୟଜନ୍ତୁଙ୍କ ବାସସ୍ଥାନର ହାନୀକୁ ନେଇ ପରିବେଶବିତ୍ ଓ ସଂରକ୍ଷଣ କର୍ମୀମାନେ ଯଥାର୍ଥରେ ଚିନ୍ତିତ । ଏ କ୍ଷତିକୁ ପୂରଣ କରିବା ପାଇଁ ସରକାର ନଈର ଦକ୍ଷିଣ ପଟେ ଥିବା ଶୂଳପାଣେଶ୍ୱର ଅଭୟାରଣ୍ୟର ଆକାର ବଢ଼ାଇବା ପାଇଁ ନିଷ୍ପତ୍ତି ନେଲେ । ଉଦ୍ଭଟ ଯୁକ୍ତି ଦିଆଯାଉଛି ଯେ ଜଙ୍ଗଲ ବୁଡ଼ିବା ସମୟରେ ପଶୁମାନେ ପହଁରି ପହଁରି ତାଙ୍କ ପାଇଁ ତିଆରି ବିଶେଷ ରାସ୍ତା ବାଟରେ ନୂଆ, ଉନ୍ନତ ଅଭୟାରଣ୍ୟକୁ ଚାଲିଯିବେ । ପାଗଳ କ'ଣ ଗଛରେ ଫଳନ୍ତି ?

ସରକାରୀ ବୁଦ୍ଧି ହେଲା ଯେ ଜଙ୍ଗଲରୁ ଲୋକଙ୍କୁ ନ ତଡ଼ିବା ଯାଏଁ ଜଙ୍ଗଲ ଓ ବନ୍ୟପ୍ରାଣୀ ସୁରକ୍ଷିତ ରହିବେ ନାହିଁ । ସେଥିପାଇଁ ଜଙ୍ଗଲ ଉପରେ ନିର୍ଭର କରୁଥିବା ମଣିଷର ପାରମ୍ପରିକ ଅଧିକାରକୁ ଛଡ଼ାଇ ନେବାକୁ ହେବ । ଶୂଳପାଣେଶ୍ୱର ଅଭୟାରଣ୍ୟର ସୀମା ଭିତରେ

ଥିବା ୧୦୧ଟି ଗାଁର ୪୦,୦୦୦ ଆଦିବାସୀ ନିଜର ଜୀବିକା ପାଇଁ ପୂରା ଜଙ୍ଗଲ ଉପରେ ନିର୍ଭରଶୀଳ । ସରକାରୀ ନୀତି ହେଲା ସେମାନଙ୍କୁ କଳେ ବଳେ କୌଶଳେ (ମେନେଇ କରି) ଜଙ୍ଗଲରୁ ବିଦା କରିବା । ଏ ୪୦,୦୦୦ ଲୋକ ପ୍ରକଳ୍ପ ପ୍ରଭାବିତ ଲୋକଙ୍କ ଭିତରେ ନାହାନ୍ତି ।

ସେମାନେ ଯିବେ କୁଆଡ଼େ? ଏତେ ବାଟ ଆସିଲା ପରେ ପାଠକେ ତାହା ଅନୁମାନ କରିପାରୁଥିବେ ବୋଲି ମୋର ବିଶ୍ୱାସ ।

ବାହାରର ଦୁନିଆରେ ରହିବାକୁ ଥାନ ମିଳୁ ନମିଳୁ ଶୂଳପାଣେଶ୍ୱର ଅଭୟାରଣ୍ୟ ବ୍ୟାଖ୍ୟାନ କେନ୍ଦ୍ରରେ ଆଦିବାସୀମାନଙ୍କ ପାଇଁ ପୂରା ଗୋଟାଏ ବଖରା ମିଳିଛି । ଅବଶ୍ୟ ପୂରା ବଖରା ମିଳିବା କଥାଟା ଅର୍ଦ୍ଧ ସତ୍ୟ । କାରଣ ସେ ବଖରାରେ କେବଳ ଆଦିବାସୀଙ୍କ ପରି ବନ୍ୟଜନ୍ତୁ ଅଛନ୍ତି ତା' ନୁହେଁ, କଲରାପତରିଆ ବାଘ ଓ ଭାଲୁ (ଦୁଇଟିଯାକ ମଲା ଅବଶ୍ୟ) ମଧ୍ୟ ଅଛନ୍ତି । କାନ୍ଥରେ ଟଙ୍ଗା ହୋଇଛି ଅବାଗିଆ କାଠ କାମ ଯାହା ସରକାରୀ-ଆଦିବାସୀ କଳାର ନମୁନା । ବଖରା ମଝିରେ ଅଛି କବାଟ ଖୋଲାଥିବା ଏକ କୁଡ଼ିଆ । ତା ଭିତରେ ଚୁଲିରେ ହାଣ୍ଡି ବସିଛି । କୁକୁରଟିଏ ଚଟାଣରେ ଶୋଇଛି । ଦୁନିଆରେ ସବୁକିଛି ଯେ ଠିକ୍‌ଠାକ୍ ଚାଲିଛି ଏହା ହେଉଛି ତା'ର ବାର୍ତ୍ତା । ବାହାରେ ଆପଣଙ୍କୁ ସ୍ୱାଗତ କରିବା ପାଇଁ ସହାସ୍ୟ ବଦନରେ ଠିଆ ହୋଇଛନ୍ତି ଏକ ଆଦିବାସୀ ସ୍ତ୍ରୀ-ପୁରୁଷଙ୍କ ଯୁଗଳ ମୂର୍ତ୍ତି - ଶ୍ରୀମତି ଓ ଶ୍ରୀ ଆଦିବାସୀ ।

ନିର୍ଲଜଙ୍କ ଭଳି ତାଙ୍କୁ ହସାଯାଉଛି । ନିଜର ରାଗକୁ ପ୍ରକାଶ କରିବାର ଅଧିକାର ଅନ୍ତତଃ ତାଙ୍କର ରହୁ । ଏଇଟା ଗୋଟେ କଥା ଯାହା ମୋର କେବେ ବି ହଜମ ହେବନାହିଁ ।

କିନ୍ତୁ ମୋର କିଛି ଭୁଲ ହୋଇଯାଇ ନାହିଁ ତ? ସେମାନେ

ବୋଧହୁଏ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ହସୁଛନ୍ତି । ହସୁଛନ୍ତି ନିଜ ଜୀବନକୁ ବଳିଦେଇ ଗୁଜୁରାଟର ଲକ୍ଷ ଲକ୍ଷ ତୃଷାର୍ତ୍ତଙ୍କୁ ପାଣି ଯୋଗାଇ ଦେବାର ଖୁସିରେ ।



ଆଜିକୁ କୋଡ଼ିଏ ବର୍ଷ ହେଲା ଗୁଜୁରାଟର ଲୋକେ ୱଣ୍ଡର କେନାଲରେ ଆସିବାକୁ ଥିବା ପାଣି ପାଇଁ ଅପେକ୍ଷା କରିଛନ୍ତି । ବର୍ଷ ବର୍ଷ ଧରି ଗୁଜୁରାଟ ସରକାର ନିଜର ଜଳସେଚନ ବଜେଟ୍‌ର ଶତକଡ଼ା ପଞ୍ଚାଅଶୀ ଭାଗ ସର୍ଦ୍ଦାର ସରୋବର ପ୍ରକଳ୍ପମାନଙ୍କରେ ଖର୍ଚ୍ଚ କରିଆସିଛି । ଏଥିପାଇଁ ଅନ୍ୟ ସବୁ କମ୍ ବ୍ୟୟସାପେକ୍ଷ, ସ୍ୱଳ୍ପ ମିଆଦୀ ଏବଂ ଛୋଟ ଜଳ ଯୋଗାଣ ବ୍ୟବସ୍ଥାକୁ ବନ୍ଦ ରଖା ଯାଇଛି । ହେଲେ ବର୍ଷ ପରେ ବର୍ଷ ନିର୍ବାଚନରେ ପାଣି ହୋଇଛି ମୁଖ୍ୟ ପ୍ରସଙ୍ଗ । ସମସ୍ତଙ୍କର ଆଶା ବର୍ତ୍ତମାନ ୱଣ୍ଡର କେନାଲ ସହିତ ବନ୍ଧା । ଏ କେନାଲ୍ କ'ଣ ସତରେ ଗୁଜୁରାଟର ସ୍ୱପ୍ନ ସାକାର କରିପାରିବ ?

ସର୍ଦ୍ଦାର ସରୋବର ବନ୍ଧଠାରୁ ଭାରୁଚ୍‌ଠାରେ ଆରବସାଗରରେ ମିଶିବା ପର୍ଯ୍ୟନ୍ତ ନର୍ମଦା ୧୮୦ କି.ମି. ତଳୁଆ ଭୂମି ଦେଇ ଗତି କରେ । ୱଣ୍ଡର କେନାଲ ଏଠାରେ ସେ ନଈର ଗତିପଥ ଉତ୍ତର ଦିଗକୁ ୯୦° ଘୂରାଇଦେବ । ଯେକୌଣସି ନଦୀ ପାଇଁ ଏପରି କିଛି ଘଟିବା ବଡ଼ ଗୁରୁତର କଥା । ଭାରୁଚ୍ ପାଖରେ ନର୍ମଦାର ମୁହାଣ

ଇଲିସି ମାଛ ଅଣ୍ଡାଦେଉଥିବା ଶେଷ କେତୋଟି ଜାଗା ଭିତରୁ ଗୋଟିଏ । ଦକ୍ଷିଣ ଭାରତରେ ଷ୍ଟାନ୍‌ଲୀ ବନ୍ଧ ଯୋଗୁଁ କାବେରୀ ନଦୀରୁ ଇଲିସି ମାଛର ବଂଶ ବୁଡ଼ିଗଲା । ସିନ୍ଧୁ ନଦୀର ଇଲିସି ପାକିସ୍ତାନର ଗୁଲାମ ମୁହମ୍ମଦ ବନ୍ଧ ଯୋଗୁଁ ଲୋପ ପାଇଗଲେ ।

ସାଲ୍‌ମନ୍ ମାଛ ପରି ଇଲିସି ମାଛ ମଧ୍ୟ ନିଜର ଜୀବନ ପ୍ରକ୍ରିୟା ପୂରା କରିବା ପାଇଁ ଉଭୟ ମଧୁର ଓ ଲୁଣି ପାଣି ଦରକାର କରେ । ତା'ର ଅଣ୍ଡା ଫୁଟେ ମଧୁର ଜଳରେ, ଅଳ୍ପ ବଡ଼ ହୋଇଗଲେ ଛୋଟ ମାଛ ସମୁଦ୍ରକୁ ଚାଲିଯାଏ ଏବଂ ଅଣ୍ଡା ଦେବା ପାଇଁ ସେ ପୁଣି ସେଇ ନଈକୁ ଫେରିଆସେ । ବନ୍ଧ ଯୋଗୁ ନଈର ପ୍ରବାହ କମିଯିବ ଏବଂ ବନ୍ଧ ପଛରେ ଅଟକି ରହୁଥିବା ଅବକ୍ଷେପ ଯୋଗୁଁ ସେ ପାଣିର ରାସାୟନିକ ଗୁଣ ଧର୍ମ ବଦଳିଯିବ । ପ୍ରବାହ କମିବାରୁ ନଦୀ ମୁହାଣରେ ମଧୁର ଓ ଲୁଣା ପାଣିର ସନ୍ତୁଳନ ବଦଳିଯିବ । ଏହି ସବୁର ଫଳରେ ସେ ନଈର ପରିବେଶରେ ବ୍ୟାପକ ପରିବର୍ତ୍ତନ ଆସିବ ଏବଂ ତାହା ନିଶ୍ଚୟ ନର୍ମଦାରେ ଇଲିସିର ଅଣ୍ଡା ଦେବାକୁ ପ୍ରଭାବିତ କରିବ । ବଂଶ ଅନ୍ୟ ନଈରେ ଲୋପ ପାଇଲା ପରି ଲୋପ ପାଇଯିବ । ବର୍ତ୍ତମାନ ନର୍ମଦାରେ ବାର୍ଷିକ ୧୩,୦୦୦ ଟନ୍ ଇଲିସି ମାଛ ଓ ମଧୁର ଜଳ ଚିଙ୍ଗୁଡ଼ି ଧରାଯାଏ । ଏହା ଉପରେ ୧୦,୦୦୦ କେଉଟଙ୍କ ଜୀବିକା ନିର୍ଭର କରେ ।

ମୋର୍ଶ କମିଟି ନଈର ତଳମୁଣ୍ଡର ପରିବେଶ ଉପରେ କୌଣସି ଅନୁଧ୍ୟାନ ହୋଇନଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ନଈର ପରିବେଶ, ଋତୁଗତ ପରିବର୍ତ୍ତନ, ଏହାର ଜୈବ ବିବିଧତା, ଜୈବ ଓ ଅଜୈବ ସଂସାଧନର ବିନିଯୋଗ - ଏଥିରୁ କୌଣସି ଗୋଟିଏ ବିଷୟରେ ମଧ୍ୟ ଅନୁଧ୍ୟାନ କରାଯାଇ ନଥିଲା । ବନ୍ଧ ନଦୀର ତଳ ଅଞ୍ଚଳର ପରିବେଶ ଓ ଲୋକଙ୍କ ଉପରେ ସେହି ବନ୍ଧ କିଭଳି ପ୍ରଭାବ

ପକାଇବ ସେ ବିଷୟରେ ବନ୍ଧ ନିର୍ମାତାମାନଙ୍କର କିଛି ବି ଧାରଣା ନଥିଲା । ତେଣୁ ବନ୍ଧର ଖରାପ ପ୍ରଭାବ ସବୁକୁ କମାଇବା ବା ଦୂର କରିବା ପାଇଁ ପଦକ୍ଷେପ ନେବାର ପ୍ରଶ୍ନ ହିଁ ଉଠୁନାହିଁ ।

ସରକାର କହୁଛନ୍ତି ଯେ ଇଲିସିର କ୍ଷତି ଭରଣା କରିବା ପାଇଁ ଜଳଭଣ୍ଡାରଗୁଡ଼ିକୁ ଅନ୍ୟ ମାଛରେ ଭରିଦେବେ । (ଜଳଭଣ୍ଡାରର ନିୟନ୍ତ୍ରଣ କାହା ହାତରେ ରହିବ, ମାଛ ମାରିବାର ଅଧିକାର କାହାକୁ ଦିଆଯିବ ସେ ନିଷ୍ପତ୍ତି କିଏ କରିବ ସେ ପ୍ରଶ୍ନ ତ ପରେ ଉଠିବ ।) ବର୍ତ୍ତମାନର ଅସୁବିଧା ହେଉଛି ଏହା ଯେ କୃତ୍ରିମ ଉପାୟରେ ଇଲିସି ମାଛର ପ୍ରଜନନ ବିଜ୍ଞାନାଗାରରେ ଏପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ଜଳଭଣ୍ଡାରରେ ବଢ଼ାଇବାକୁ ହେଲେ ପ୍ରାକୃତିକ ଆବାସରୁ ଜାଆଁଳ ଆଣି ଛାଡ଼ିବାକୁ ହେବ । କିନ୍ତୁ ବନ୍ଧ ତ ନଇରୁ ଇଲିସିଙ୍କୁ ମାରିସାରିଥିବ ! ସାରା ପୃଥିବୀରେ ନଦୀବନ୍ଧମାନେ ମଧୁର ଜଳର ମାଛ ଜାତିଙ୍କର ଏକ ପଞ୍ଚମାଂଶ ଧ୍ୱଂସ କରିସାରିଛନ୍ତି ବା ବିପଦ ମୁହଁକୁ ଠେଲି ଦେଇଛନ୍ତି ।

ତେଣୁ ଏ କୁଇଜ୍ ପ୍ରଶ୍ନର ଉତ୍ତର ଦିଅନ୍ତୁ - ଏହି ୪୦,୦୦୦ କେଉଟ ଯିବେ କୁଆଡ଼େ ? ଆପଣମାନଙ୍କର ଉତ୍ତର ଜନହିତକାରୀ ସରକାର ଡଟ୍ କମ୍ (government_that_cares.com) ଠିକଣାରେ ପଠାଇବାକୁ ଅନୁରୋଧ ।

ଏହା ପରେ ଓଣ୍ଟର କେନାଲ୍‌ର କାହାଣୀ ଶୁଣିବା ଆସନ୍ତୁ । ମୁଁ ଜାଣିଛି ଯେ ଜଳସେଚନ ଭଳି ଜିନିଷ ଉପରେ ଲେଖିଲେ କେହି ପଢ଼ିବାକୁ ଆଗ୍ରହୀ ହୋଇ ନପାରନ୍ତି । କେନାଲ, ଜଳସେଚନ ପରି ରସହୀନ, ବିରକ୍ତିକର ଜିନିଷ ପାଇଁ ଆଗ୍ରହ ରଖିବା ଭାରି କଷ୍ଟ । ତଥାପି ମୁଁ ଓଣ୍ଟର କେନାଲ ବିଷୟରେ ଏବଂ ତା'ଠାରୁ ରହିଥିବା ଆଶା ବିଷୟରେ କହିବି । ଆପଣଙ୍କୁ ଏହା ଶୁଣିବାରେ ଆଗ୍ରହୀ

ହେବା ପାଇଁ ପଡ଼ିବ, ବିଶେଷ କରି ଆପଣ ଯଦି ସେହି ଲୌହ ତ୍ରିଭୁଜର ଝାଲୁଆ ମୁଠାରୁ ନିଜର ଭବିଷ୍ୟତକୁ ଛଡ଼ାଇ ଆଣିବାକୁ ଚାହାନ୍ତି ।

ଭାରତର ଅଧିକାଂଶ ନଈ ବର୍ଷାପୁଷ୍ଟ । ନଈର ପ୍ରବାହର ଶତକଡ଼ା ୮୦-୮୫ ଭାଗ ବର୍ଷାଦିନେ ଜୁନ୍‌ରୁ ସେପ୍‌ଟେମ୍ବର ମଝିରେ ଘଟେ । ଯେକୌଣସି ଜଳସେଚନ ପାଇଁ ଉଦ୍ଦିଷ୍ଟ ବନ୍ଧର ଲକ୍ଷ ହେଲା ବର୍ଷାଦିନରେ ସମୁଦ୍ରକୁ ବହି ଯାଉଥିବା ଏ ପାଣିକୁ ଜଳଭଣ୍ଡାରରେ ଅଟକାଇ ରଖିବା ଏବଂ ବର୍ଷର ଅନ୍ୟ ସମୟରେ କେନାଲ ସାହାଯ୍ୟରେ ଶୁଖିଲା ଭୂଇଁରେ ବିଚାରିତ ଭାବରେ ମଡ଼ାଇବା । ଏହି ଜଳସେଚିତ ଅଞ୍ଚଳକୁ ବନ୍ଧର *କମାଣ୍ଡ ଏରିଆ* କୁହାଯାଏ । ଅଧିକାଂଶ ଜଳସେଚିତ ଅଞ୍ଚଳ ଆଗରୁ ବର୍ଷରେ ଅଳ୍ପ କେଇ ମାସ ପାଇଁ ପାଣି ପାଉଥିଲେ । ବର୍ତ୍ତମାନ କେନାଲ ସାହାଯ୍ୟରେ ବର୍ଷସାରା ପାଣି ମାଡୁଛି । ଏହି ପରିବର୍ତ୍ତନ ଫଳରେ ସେହି ଅଞ୍ଚଳର ପରିବେଶର ଅବସ୍ଥା କିଭଳି ପ୍ରଭାବିତ ହେବ ?

ମଣିଷର ଦେହ ପାଇଁ ଶକ୍ତି ବୃଦ୍ଧିକାରୀ ଷ୍ଟେରଏଡ୍ ଯାହା କରେ ସବୁଦିନିଆ ଜଳସେଚନ ଜମି ପାଇଁ ତାହା ହିଁ କରେ । ଷ୍ଟେରଏଡ୍ ଖାଇ ଜଣେ ସାଧାରଣ ଖେଳାଳୀ ଅଲମ୍ପିକ୍ ମେଡ଼ାଲ ପାଇପାରେ । ହେଲେ ଶେଷରେ ତା' ସ୍ୱାସ୍ଥ୍ୟ ଭାଙ୍ଗିଯାଏ । ସେହିପରି ସବୁଦିନିଆ ଜଳସେଚନ ବ୍ୟବସ୍ଥା ଦ୍ୱାରା ବର୍ଷକୁ ଗୋଟାଏ ଫସଲ ହେଉଥିବା ଜମିରେ ଦୁଇଟା ବା ତା'ଠାରୁ ଅଧିକ ଫସଲ ହୋଇପାରିବ ନିଶ୍ଚୟ । ଥରେ କେନାଲ ଜମି ପାଖକୁ ଚାଲିଗଲେ ଚାଷୀମାନେ ମକା, ଯଅ, ବିରି, ମୁଗ, କୋଳଥ ଭଳି ଅଳ୍ପ ପାଣି ଦରକାର କରୁଥିବା ପାରମ୍ପରିକ ଫସଲ ଛାଡ଼ି କପା, ଧାନ, ସୋୟାବିନ ଓ ଆଖୁ ଭଳି ଅଧିକ ପାଣିଖିଆ ଅର୍ଥକରୀ ଫସଲ ଚାଷ କରିବା ଆରମ୍ଭ କରନ୍ତି ।

ସବୁ ଫସଲ ଭିତରେ ଆଖୁ ସବୁଠାରୁ ଅଧିକ ପାଣି ଦରକାର କରେ । ଏହା ଫଳରେ ପୂରା ଅଞ୍ଚଳର ପାରମ୍ପରିକ ଚାଷ ପ୍ରଣାଳୀରେ ହଠାତ୍ ପରିବର୍ତ୍ତନ ହୁଏ । ଲୋକେ ନିଜେ ଖାଇପାରିବା ଭଳି ଫସଲ ଚାଷ କରିବା ଛାଡ଼ି ଆଖୁ, କପା ଭଳି କେବଳ ବିକ୍ରି କରିପାରୁଥିବା ଫସଲ ଚାଷ କରିବା ଆରମ୍ଭ କରନ୍ତି । ବଜାର ସହିତ ଏଭଳି ଯୋଡ଼ିହେବା ଫଳରେ ସେମାନେ ଧୀରେ ଧୀରେ ନିଜ ଜୀବନ ଉପରୁ ନିୟନ୍ତ୍ରଣ ହରାଇ ବସନ୍ତି ।

କିନ୍ତୁ ଅଞ୍ଚଳର ସାମଗ୍ରିକ ପାରିପାର୍ଶ୍ୱିକ ସ୍ୱାସ୍ଥ୍ୟ ପାଇଁ ଏ ପରିବର୍ତ୍ତନ ବିଷାକ୍ତ । ବଜାରରେ ଫସଲ ବିକ୍ରି ହୋଇପାରେ, ମାତ୍ର ଜମି ଏପରି ପରିବର୍ତ୍ତନକୁ ବେଶି ଦିନ ପର୍ଯ୍ୟନ୍ତ ସହିପାରେ ନାହିଁ । ଜମି ଉପରେ ବଢ଼ିଚାଲିଥିବା ଚାହିଦା ପୂରଣ କରିବା ଅସମ୍ଭବ ହୋଇପଡ଼େ । ଷ୍ଟେରଏଡ୍ ଖାଉଥିବା ଖେଳାଳୀ ଧୀରେ ଧୀରେ ଅକ୍ଷମ ହୋଇ ଆସିଲା ପରି ଜମି ମଧ୍ୟ ଧୀରେ ଧୀରେ ନୀରସ ଓ ବନ୍ଧ୍ୟା ହୋଇଉଠେ, ଅମଳ କମିଚାଲେ । ବର୍ତ୍ତମାନ କୂଅ ପାଣିରେ ଜଳସେଚିତ ଜମିର ଉତ୍ପାଦିକା ଶକ୍ତି କେନାଲ ଦ୍ୱାରା ଜଳସେଚିତ ଜମିର ଉତ୍ପାଦିକା ଶକ୍ତିର ପ୍ରାୟ ଦୁଇଗୁଣ । କେବଳ ଅଳ୍ପ କେତେକ ପ୍ରକାରର ଜମିରେ ହିଁ କେନାଲ ସାହାଯ୍ୟରେ ସବୁଦିନିଆ ଜଳସେଚନ ସମ୍ଭବ । କେନାଲ ଦ୍ୱାରା ଜଳସେଚିତ ଅଞ୍ଚଳରେ ଭୂତଳ ଜଳସ୍ତର ଉପରକୁ ଉଠିଆସେ । ପାଣି ଧୀରେ ଧୀରେ ମାଟି ଭିତର ଦେଇ ଉଠିବାବେଳେ ସେଥିରେ ବିଭିନ୍ନ ପ୍ରକାରର ଖଣିଜ ଲୁଣ ମିଳାଇଯାଏ । ପାଣି ସହିତ ଏହି ଲୁଣ ଧୀରେ ଧୀରେ ଭୂଇଁ ଉପରକୁ ଉଠିଆସେ ଓ ଉପର ମାଟିରେ ଜମିରହି ଫସଲର ବଢ଼ିବାରେ ବାଧା ଆଣେ । ଅଷ୍ଟ୍ରେଲିଆର ଜାତୀୟ ବିଶ୍ୱବିଦ୍ୟାଳୟର *"ସେଣ୍ଟର୍ ଫର୍ ରିସୋର୍ସ ଏଣ୍ଡ୍ ଏନ୍‌ଭାରନ୍‌ମେଣ୍ଟାଲ ଷ୍ଟଡିଜ୍"* କରିଥିବା ଏକ ଅନୁଧ୍ୟାନ

ଅନୁସାରେ ପୃଥିବୀର ପାଞ୍ଚ ଭାଗରୁ ଭାଗେ ଜଳସେଚିତ ଚାଷ ଜମି ଏବେ ଲୁଣଗ୍ରସ୍ତ ।

ଅଶୀଦଶକର ମଝି ସୁଦ୍ଧା ପାକିସ୍ତାନର ମୋଟ ୩.୭ କୋଟି ବର୍ଗ କି.ମି. ଜଳସେଚିତ ଜମିରୁ ୨.୫ କୋଟି ବର୍ଗ କି.ମି. ଜମିରେ ପାଣି ଜକଉଥିଲା ନହେଲେ ଲୁଣି ମାରିଥିଲା କିମ୍ବା ଉଭୟ ହୋଇଥିଲା । ଭାରତରେ ଲୁଣା ହୋଇଥିବା ଜମିର ଅଟକଳ ହେଲା ୬୦ ହଜାରରୁ ଏକ ଲକ୍ଷ ବର୍ଗ କି.ମି. ଜଳସେଚିତ ଜମି ।

ଗୁପ୍ତ ସରକାରୀ ଅଧ୍ୟୟନ ଅନୁସାରେ ସର୍ଦ୍ଦାର ସରୋବର ଦ୍ୱାରା ଜଳସେଚିତ ହେବାକୁ ଥିବା ଜମିରୁ ଶତକଡ଼ା ୫୨ଭାଗ ଜମିରେ ପାଣି ଜକେଇବା ଏବଂ ଲୁଣି ମାରିବାର ସମ୍ଭାବନା ରହିଛି ।

କିନ୍ତୁ ଏତିକିରେ ଖରାପ ଖବର ସରିଯାଉ ନାହିଁ ।

ଅଟକଳ ଅନୁସାରେ କଂକ୍ରିଟ୍‌ରେ ତିଆରି ୪୬୦ କି.ମି. ଲମ୍ବା ସର୍ଦ୍ଦାର ସରୋବର ୱାଣ୍ଡର୍ କେନାଲ ଓ ଏହାର ୭୫.୦୦୦ କି.ମି. ଲମ୍ବା ଶାଖା କେନାଲ ଦ୍ୱାରା ୧୨ଟି ଜିଲ୍ଲାର ୨୦.୦୦୦ ବର୍ଗ କି.ମି. ଚାଷ ଜମି (ଅର୍ଥାତ୍ ୨୦ ଲକ୍ଷ ହେକ୍‌ଟର) ଜଳସେଚିତ ହେବ । ଏ ବାରଟି ଜିଲ୍ଲା ମଧ୍ୟରୁ ସବୁଠାରୁ ବେଶି ପାଣି ନିଅଣ୍ଟିଆ ଜିଲ୍ଲା କଛ ଓ ସୌରାଷ୍ଟ୍ର କେନାଲ୍‌ର ଶେଷ ମୁଣ୍ଡରେ ଅଛନ୍ତି । କିନ୍ତୁ ସରକାରଙ୍କ ପ୍ରଚାର ଅନୁସାରେ ଏହି ଦୁଇ ଜିଲ୍ଲାକୁ ପାଣି ଯୋଗାଇବା ହିଁ ହେଉଛି ଏହି କେନାଲ ତିଆରିର ମୁଖ୍ୟ ଲକ୍ଷ ।

ସେହି ଅଞ୍ଚଳରେ ବର୍ତ୍ତମାନ ଥିବା ପ୍ରାକୃତିକ ଜଳ ନିଷ୍କାସନ ଧାର ସବୁର ଉପରେ ଏହି କେନାଲଗୁଡ଼ିକ ଏକ ମନମୁଖୀ କଂକ୍ରିଟ୍ ଜାଲ ଭାବରେ ବିଛା ଯାଉଛି । ଏହା ହେଉଛି କୌଣସି ପତ୍ରର ପ୍ରକୃତିକ ଶିରା ବିନ୍ୟାସକୁ କାଟିଦେଇ ଆଉଥରେ ମନଇଛା ସଜାଇ ଦେବା

ଭଳି କଥା । କେନାଲ ଯେଉଁଠି ସବୁ ପ୍ରାକୃତିକ ଜଳ ନିଷ୍କାସନ ଧାରକୁ କାଟିକରି ଯିବ, ସେଠାରେ ବର୍ଷାପାଣିର ସାମୟିକ ସ୍ୱାଭାବିକ ପ୍ରବାହରେ ବ୍ୟାଘାତ ଘଟିବ ଏବଂ ଏହା ଫଳରେ ସେଠାର ଜମିରେ ପାଣି ଜମି ରହିବ । ଇଞ୍ଜିନିୟରମାନେ ଏହାର ଗୋଟାଏ ସମାଧାନ ମଧ୍ୟ ବତାଇଛନ୍ତି । ସେ ସମାଧାନ ହେଲା ସେ ଅଞ୍ଚଳର ପ୍ରାକୃତିକ ଜଳ ନିଷ୍କାସନ ଧାର ସବୁକୁ ଚିହ୍ନିତ କରିବା ଏବଂ ତା' ବଦଳରେ କେନାଲ ବ୍ୟବସ୍ଥାକୁ ଖାପ ଖାଇଲା ଭଳି କୃତ୍ରିମ ଜଳ ନିଷ୍କାସନ ଧାରମାନ ତିଆରି କରିବା । ଏହାର ଅସୁବିଧାଟା ଯେ କେହି ଧରିପାରିବ – ଏଥିରେ ପ୍ରଚୁର ଟଙ୍କା ଖର୍ଚ୍ଚ ହେବ । ସର୍ଦ୍ଦାର ସରୋବର ପ୍ରକଳ୍ପର ବ୍ୟୟ ଅଟକଳରେ ଜଳ ନିଷ୍କାସନ ପ୍ରଣାଳୀ ତିଆରି କରିବାର ଖର୍ଚ୍ଚ ଅନ୍ତର୍ଭୁକ୍ତ ନୁହେଁ । ଖାଲି ଏହି ପ୍ରକଳ୍ପରେ ନୁହେଁ, ଅଧିକାଂଶ ପ୍ରକଳ୍ପର ଅଟକଳରେ ଏହି ଖର୍ଚ୍ଚ ମିଶିନଥାଏ । ତା'ର କାରଣ ଶୁଣନ୍ତୁ ।

ବିଶ୍ୱବ୍ୟାଙ୍କର ଦକ୍ଷିଣ ଏସିଆ ଦାୟିତ୍ୱରେ ଥିବା ଉପସଭାପତି ଖୋଲାଖୋଲି କୁହନ୍ତି ଯେ ବ୍ୟାଙ୍କ ଅର୍ଥ ଲଗାଉଥିବା ଦକ୍ଷିଣ ଏସିଆର ଜଳସେଚନ ପ୍ରକଳ୍ପମାନଙ୍କରେ ଜଳ ନିଷ୍କାସନ ପାଇଁ ବ୍ୟୟ ବରାଦ ହୁଏ ନାହିଁ । କାରଣ ଜଳସେଚନ କରିବା ପାଇଁ ଯେତିକି ଖର୍ଚ୍ଚ ଦରକାର ହୁଏ, ଜଳ ନିଷ୍କାସନ ବ୍ୟବସ୍ଥା ତିଆରି କରିବା ପାଇଁ ତା'ର ପାଞ୍ଚ ଗୁଣ ଅଧିକ ଖର୍ଚ୍ଚ ହୁଏ । ତେଣୁ ଏହାକୁ ହିସାବକୁ ନେଲେ କୌଣସି ଜଳସେଚନ ପ୍ରକଳ୍ପର ଆର୍ଥିକ ଉପାଦେୟତା ରହିବ ନାହିଁ । ଏ ସମସ୍ୟା ପାଇଁ ବ୍ୟାଙ୍କ ଅନୁସରଣ କରୁଥିବା ସମାଧାନର ସୂତ୍ର ଅତି ସରଳ । ଜଳସେଚନ ବ୍ୟବସ୍ଥା ତିଆରି କରିବା ପାଇଁ ଋଣ ଯୋଗାଇ ଦିଅ । ତା'ପରେ ଜମିରେ ପାଣି ଜକେଇବା ଆଉ ଲୁଣା ମାରିବା ପର୍ଯ୍ୟନ୍ତ ହାତ ବାନ୍ଧି ବସ । ଋଣର ଟଙ୍କା ଥରେ ଖର୍ଚ୍ଚ

ହୋଇସାରିଲା ପରେ ଜମି ବରବାଦ ହୋଇସାରିଲା ପରେ ଖାତକ ତ ପୁଣି ମହାଜନ ପାଖକୁ ଫେରିବ । ଏଥର ଜଳ ନିଷ୍କାସନ ପ୍ରକଳ୍ପ ପାଇଁ ଆହୁରି ମୋଟା ଆକାରର ଋଣ ଯୋଗାଇଦିଅ ।

ପାକିସ୍ତାନରେ ସିନ୍ଧୁ ନଦୀ ଉପରେ ତାର୍‌ବେଲା ଏବଂ ମାଙ୍ଗ୍‌ଲା ବନ୍ଧ ପାଇଁ ବିଶ୍ୱବ୍ୟାଙ୍କ ଯଥାକ୍ରମେ ୧୯୭୭ ଏବଂ ୧୯୬୭ରେ ଋଣ ଯୋଗାଇଥିଲା । ବର୍ତ୍ତମାନ ଏ ବନ୍ଧ ଦ୍ୱାରା ଜଳସେଚିତ ଜମିରେ ପାଣି ଜକଉଛି । ଅଳ୍ପଦିନ ତଳେ ବ୍ୟାଙ୍କ ଏହି ଅଞ୍ଚଳରେ ଏକ ଜଳ ନିଷ୍କାସନ ପ୍ରକଳ୍ପ ପାଇଁ ୭୮·୫ କୋଟି ଡଲାର (ପାଖାପାଖି ୩୬୦୦ କୋଟି ଟଙ୍କା)ର ଏକ ଋଣ ମଞ୍ଜୁର କରିଛି । ଭାରତର ପଞ୍ଜାବ ଏବଂ ହରିଆନାରେ ମଧ୍ୟ ବ୍ୟାଙ୍କ ଏଇଆ ହିଁ କରୁଛି । ତାହାଣୀ ହୋଇ ଲାଗୁଛି ଯିଏ, ଗୁଣିଆ ହୋଇ ଝାଡୁଛି ସିଏ ।

ଜଳ ନିଷ୍କାସନ ବ୍ୟବସ୍ଥା ନଥାଇ ଜଳସେଚନର ବ୍ୟବସ୍ଥା କରିବା ଶିରା ନଥାଇ ଧମନି ରହିଲା ଭଳି କଥା । ଅର୍ଥାତ୍ ସମ୍ପୂର୍ଣ୍ଣ ଭାବରେ ଅର୍ଥହୀନ ।

କିନ୍ତୁ ଏହା ଭିତରେ ସର୍ଦ୍ଦାର ସରୋବର ପ୍ରକଳ୍ପମାନଙ୍କରୁ ବିଶ୍ୱବ୍ୟାଙ୍କ ପଛଘୁଞ୍ଚା ଦେଇ ସାରିଲାଣି । ତେଣୁ ଜଳ ନିଷ୍କାସନ ବ୍ୟବସ୍ଥା ପାଇଁ ଦରକାର ଥିବା ୩ ଲକ୍ଷରୁ ୪ ଲକ୍ଷ କୋଟି ଟଙ୍କା ଯେ କେଉଁଠୁ ଆସିବ ସେ କଥା ମା' ଗଙ୍ଗେ ଜାଣନ୍ତି । କିନ୍ତୁ ଏଥିପାଇଁ ସରକାରଙ୍କର କେନାଲ୍ ତିଆର କାମ ବନ୍ଦ ହୋଇଯାଇନାହିଁ । ଜଳଭଣ୍ଡାର ଓ ବନ୍ଧ ତିଆରି ସରିବା ଆଗରୁ, କେନାଲ ତିଆରି କାମ ଶେଷ ହେବା ଆଗରୁ, ଜମିରେ ଟୋପେ ପାଣି ପହଞ୍ଚିବା ଆଗରୁ, ସେଠାରେ ପାଣି ଜକେଇବା ଆରମ୍ଭ ହେଲାଣି । ସବୁଠାରୁ ଅଧିକ ଖରାପ ପ୍ରଭାବ ପଡ଼ିଛି ପୁର୍ନବାସ କଲୋନୀର ଜମି ଉପରେ ।

ସର୍ଦ୍ଦାର ସରୋବର ଜଳସେଚନ ଯୋଜନାକାରୀ ଏବଂ ପୂର୍ବର

ଅନ୍ୟ ପ୍ରକଳ୍ପର ଯୋଜନାକାରୀମାନଙ୍କ ଭିତରେ ଗୋଟିଏ ବଡ଼ ପ୍ରଭେଦ ରହିଛି । ଆଉ କିଛି ନକଲେ ବି ସର୍ଦ୍ଦାର ସରୋବର ଯୋଜନାକାରୀମାନେ ସ୍ୱୀକାର କରନ୍ତି ଯେ ପାଣି ଜକେଇବା ଓ ଜମିଲୁଣା ମାରିବା ହେଉଛି ଏକ ସମସ୍ୟା, ଆଉ ତାହାର ସମାଧାନ ଖୋଜିବା ଜରୁରୀ ।

ହେଲେ ସମସ୍ୟାର ଯେଉଁ ସମାଧାନ ସେମାନେ ଦିଅନ୍ତି ତା' ଯେ କୌଣସି ଗୋଟାଏ ଉଦ୍ଭଟ ନାଟକର ଉଦ୍ଭଟତମ ଦୃଶ୍ୟକୁ ବଳିଯିବ । ସେମାନେ ଚାହାନ୍ତି ଯେ କମାଣ୍ଡ ଅଞ୍ଚଳର ପ୍ରତି ୧୦୦ ବର୍ଗ କି·ମି·ରେ ଗୋଟିଏ ଲେଖାଏଁ ଭୂତଳ ଜଳ ମାପକ (ସେନ୍‌ସର) ରଖାଯିବ ଏବଂ ସେସବୁ ସେନ୍‌ସର ଗୋଟିଏ କେନ୍ଦ୍ରୀୟ କମ୍ପ୍ୟୁଟର ସହିତ ଯୋଡ଼ା ହେବ । ଏଥିପାଇଁ ମୋଟରେ ପ୍ରାୟ ୧୮୦୦ ମାପକ ଦରକାର ହେବ । ସବୁ ଅଞ୍ଚଳର ମାପକରୁ ଆସୁଥିବା ତଥ୍ୟ ସେ କମ୍ପ୍ୟୁଟରରେ ବିଶ୍ଳେଷିତ ହେବ, ଆଉ ଯେଉଁ କେନାଲ ପାଖ ଜମିରେ ପାଣି ଜକଉଥିବ, ସେ କେନାଲ ମୁଣ୍ଡକୁ ପାଣି ନ ଛାଡ଼ିବା ପାଇଁ କମ୍ପ୍ୟୁଟର ନିର୍ଦ୍ଦେଶ ପଠାଇବ ।

ଜଳସେଚନ, ଜଳ ନିଷ୍କାସନ, ସେଚନ-ନିଷ୍କାସନ ଆଦି ବିଭିନ୍ନ ନିର୍ଦ୍ଦିଷ୍ଟ ବ୍ୟବହାର ପାଇଁ ଜମି ଉପରେ ଟ୍ୟୁବ୍‌ୱେଲମାନଙ୍କର ଏକ ଜାଲ ବିଛାଯିବ । ଏ ସବୁ ଟ୍ୟୁବ୍‌ୱେଲ ଯୋଡ଼ା ରହିବ କେନ୍ଦ୍ରୀୟ କମ୍ପ୍ୟୁଟର ସହିତ । ଲୁଣି ପାଣିକୁ ଟ୍ୟୁବ୍‌ୱେଲ ଦ୍ୱାରା ବାହାର କରି ଉପଯୁକ୍ତ ପରିମାଣର ମଧୁର ଜଳ ସହିତ ମିଶାଯାଇ ଆଗରୁ ତିଆରି ନାଳ ସାହାଯ୍ୟରେ ମାଟି ଭିତରକୁ ଛାଡ଼ି ଦିଆଯିବ । ଏ ନାଳ ତିଆରି ପାଇଁ ଆହୁରି ଜମି ଅଧିଗ୍ରହଣ କରାଯିବ । 'କଳ୍ପବୃକ୍ଷ' ନାମକ ସଂଗଠନର ରାହୁଲ୍ ରାମ କରିଥିବା ସର୍ଭେ ଅନୁସାରେ ଜଳସେଚନର ଉତ୍ପାଦିକା ଲକ୍ଷ୍ୟ ହାସଲ ପାଇଁ ୱଣ୍ଡର କେନାଲର ୮୨ଭାଗ ପାଣି

ପମ୍ପ ଦ୍ୱାରା ପୁଣିଥରେ ମାଟିତଳୁ ବାହାର କରିବାକୁ ପଡ଼ିବ ।

ଏ ପର୍ଯ୍ୟନ୍ତ ଗୋଟିଏ ମଧ୍ୟ ଏଭଳି ଇଲେକ୍‌ଟ୍ରୋନିକ୍ ଜଳସେଚନ ପ୍ରକଳ୍ପ କେଉଁଠାରେ ଚାଲୁ ହୋଇନାହିଁ । ଏପରିକି ଗୋଟାଏ ଆଗୁଆ ପାଇଲଟ୍ ପ୍ରକଳ୍ପ ମଧ୍ୟ ଚାଲୁ ନାହିଁ । କିଛି କ୍ଷୟପ୍ରାପ୍ତ ଜମିରେ ଏହାର ଏକ ଛୋଟ ପରୀକ୍ଷାମୂଳକ ପ୍ରକଳ୍ପ କରି ଦେଖିବା କଥା ଯୋଜନାକାରୀଙ୍କ ମୁଣ୍ଡକୁ ଢୁକି ନାହିଁ । ଜନସାଧାରଣଙ୍କ ପଇସା ଖର୍ଚ୍ଚ କରି ପୂରା ୨୦ ଲକ୍ଷ ହେକ୍‌ଟର ଜମି ଉପରେ ଏହି ଜଳ ନିଷ୍କାସନ ଯୋଜନା ସେମାନେ ସିଧା ସଳଖ ଲାଗୁ କରିବେ । ତା'ପରେ ଏହା କାମ କରୁଛି ନା ନାହିଁ ଦେଖାଯିବ । ଯଦି ଏ ବ୍ୟବସ୍ଥା କାମ ନକଲା, ତା'ହେଲେ? ସେଇଠୁ କ'ଣ ହେଲା । ସରକାରୀ ଅର୍ଥ ଶ୍ରାଦ୍ଧ ହେଲେ ଅଫିସରଙ୍କର ଯାଏ କେତେ ଆସେ କେତେ? ତାଙ୍କୁ ତ ତାଙ୍କ ଦରମା ମିଳି ଚାଲିଥିବ । ଅବସର ନେଲା ପରେ ଲୋକଙ୍କ ରକ୍ତରେ ହୋରୀ ଖେଳିଥିବାରୁ ତାଙ୍କୁ ପେନ୍‌ସନ୍, ଗ୍ରାଚୁଇଟୀ, ଏ ସବୁକିଛି ମଧ୍ୟ ମିଳିବ ।

ସତରେ କ'ଣ ଏ ବ୍ୟବସ୍ଥା କାମ କରିବ? ଏ ତ କେଉଁ ରକେଟ୍ ବୈଜ୍ଞାନିକକୁ ଅମାନିଆ ଗାଈ ଦୁହିଁବା ପାଇଁ ପଠେଇଲା ଭଳିଆ କଥା । ଏମାନଙ୍କୁ ତ କେନାଲର କଂକ୍ରିଟ କାଛ ତିଆରି କରି ଆସୁନାହିଁ । ସେମାନେ ଗଢ଼ିଥିବା କଂକ୍ରିଟ କାଛ ଭୁଷୁଡ଼ି ପଡୁଛି ଏବଂ ଆଖପାଖର ମଣିଷ ଓ ଫସଲର ବ୍ୟାପକ କ୍ଷତି କରୁଛି । ଏମାନେ ପୁଣି ଆଗରୁ ପରୀକ୍ଷା ହୋଇନଥିବା ପ୍ରଯୁକ୍ତି ବିଦ୍ୟାକୁ ନେଇ ଏକ ଭୀମକାୟ ଇଲେକ୍‌ଟ୍ରନିକ ଜଳସେଚନ ବ୍ୟବସ୍ଥା ଚଲାଇବେ । ଟିକିଏ ବର୍ଷାରେ ପରା ସେମାନେ ଗଢ଼ିଥିବା ବଡ଼ ବନ୍ଧର ଖଣ୍ଡେ ଛାଡ଼ିଯାଉଛି ।

ସରକାର ନିଜେ କୁହନ୍ତି ଯେ ଉପରୋକ୍ତ ପରିସ୍ଥିତିରେ ଭୂତଳ

ଏବଂ ଭୂଇଁ ଉପର ଜଳ ପାଇଁ ଏକ ପୂର୍ଣ୍ଣାଙ୍ଗ ସମତୁଲ ବ୍ୟବସ୍ଥାର ପରିଯୋଜନା ଓ ପରିଚାଳନା କରିବା ହେଉଛି ଏକ ଅତି ଜଟିଳ କଥା । ସତ କଥା । ହେଲେ ସରକାର ଏ ଜଟିଳ ଏବଂ ପାଖାପାଖି ଅସମ୍ଭବ ସମସ୍ୟାର ସମାଧାନ କେମିତି କରିବେ ବୋଲି ଭାବୁଛନ୍ତି ଆସନ୍ତୁ ଦେଖିବା । ସରକାରଙ୍କ ପ୍ରତିକାର ବ୍ୟବସ୍ଥା ହେଉଛି – "ଏପରି ଏକ ପୂର୍ଣ୍ଣାଙ୍ଗ ଯୋଜନା କାର୍ଯ୍ୟକାରୀ କରିବା କେବଳ ସେତେବେଳେ ସମ୍ଭବ ହେବ ଯେତେବେଳେ କି ଉଭୟ ଭୂତଳ ଏବଂ ଭୂଇଁ ଉପର ଜଳର ପରିଚାଳନାର ଭାର ଗୋଟିଏ ଏକକ ସଂସ୍ଥା ହାତରେ ରହିବ ।"

ବର୍ତ୍ତମାନ ଏ କଥା ଆପଣଙ୍କ ମୁଣ୍ଡରେ ଅଳ୍ପ ଅଳ୍ପ ପଶିବା ଆରମ୍ଭ ହେଲାଣି । ପାଣି କାହାର? 'ଏକକ ସଂସ୍ଥା'ର । ପାଣି ବିକିବ କିଏ? 'ସେହି ଏକକ ସଂସ୍ଥା' । ବିକ୍ରି ଫଳରେ ଲାଭ କାହାର ହେବ? 'ଏକକ ସଂସ୍ଥା'ର । ସରକାରୀ ଯୋଜନା ବଳରେ ଏହି ଏକକ ସଂସ୍ଥା ଚାଷୀମାନଙ୍କର ସମବାୟ ସମିତିକୁ ପାଣି ବିକିବ । ଏ ପର୍ଯ୍ୟନ୍ତ ଏ ସମବାୟ ସମିତିମାନଙ୍କର ଚିହ୍ନବର୍ଣ୍ଣ ନାହିଁ । ହେଲେ ଆମର ବଳଶାଳୀ ଏକକ ସଂସ୍ଥା କ'ଣ ନିଜ ସୁବିଧାର ସମିତି ତିଆରି କରିପାରିବନି, ନା ଚାଷୀମାନଙ୍କୁ ସହଯୋଗ କରିବା ପାଇଁ ବାଧ୍ୟ କରିପାରିବନି? ହେଲେ କମ୍ପ୍ୟୁଟର ପାଣି ତ ସାଦା ପାଣି ଭଳି ଇଆଡୁ ସିଆଡୁ ପାଣି ନୁହେଁ । ଏ ପାଣିକୁ କିଣିବା ପାଇଁ ଦରକାର ମୁଠା ମୁଠା ଟଙ୍କା । ଯାହା ପାଖରେ ଟଙ୍କା ଥିବ କେବଳ ସେ ହିଁ କିଣିପାରିବ ।

ଆସ୍ତେ ଆସ୍ତେ ବଡ଼ ଚାଷୀ ଛୋଟ ଚାଷୀଙ୍କ ଜମି କିଣିନେବେ । ଲୋକେ ପୁଣି ନିଜ ଭିଟାମାଟି ଛାଡ଼ି ଦୂରକୁ ଚାଲିଯିବା ପାଇଁ ବାଧ୍ୟ ହେବେ ।

ଯେହେତୁ ଏ ଏକକ ସଂସ୍ଥା ହାତରେ କମ୍ପ୍ୟୁଟର ପାଣିର

ମାଲିକାନା ରହିବ, ସେ ହିଁ ଠିକ୍ କରିବ ଯେ କେଉଁ ଚାଷୀ କ'ଣ ଫସଲ କରିବ । ଏବେର କଥା ଅନୁସାରେ କୁଆଡ଼େ ଆଖୁଚାଷ ପାଇଁ ଅନୁମତି ଦିଆଯିବ ନାହିଁ । କାରଣ ଉପରମୁଣ୍ଡରେ ଆଖୁ ଚାଷ କଲେ ସେଇଠି ହିଁ ପାଣି ସରିଯିବ । ତଳମୁଣ୍ଡରେ ପହଞ୍ଚିବ ନାହିଁ । ହେଲେ କେନାଲର ଉପର ମୁଣ୍ଡରେ ଦଶଟି ବଡ଼ ଚିନି କଳ ବସାଇବା ପାଇଁ ଏହା ଭିତରେ ଅନୁମତି ଦିଆସରିଛି ।

ଯୋଜନା ଅନୁସାରେ ଉକାଇ ବନ୍ଧ ଦ୍ୱାରା ଜଳସେଚିତ ଜମିର ମାତ୍ର ଶତକଡ଼ା ୩୦ ଭାଗରେ ଆଖୁଚାଷ ହେବା କଥା । ହେଲେ ବର୍ତ୍ତମାନ ଆଖୁଚାଷ ହେଉଚି ଶତକଡ଼ା ୭୫ ଭାଗ ଜମିରେ । ଆଉ ଶତକଡ଼ା ୩୦ଭାଗ ଜମିରେ ପାଣି ଜକଉଛି । ମହାରାଷ୍ଟ୍ରରେ ରାଜନୀତିରେ ଟାଣୁଆ ଚିନି ଲବିର କୃପାରୁ ଆଖୁଚାଷରେ ଜଳସେଚନ ପାଇଁ ଉଦ୍ଦିଷ୍ଟ ମୋଟ ପାଣିର ଅଧା ବ୍ୟବହୃତ ହେଉଛି । କିନ୍ତୁ ଆଖୁ ଚାଷ ହେଉଥିବା ଜମିର ପରିମାଣ ରାଜ୍ୟର ମୋଟ ଜଳସେଚିତ ଜମିର ଶତକଡ଼ା ୧୦ ଭାଗ ମାତ୍ର ।

ଏ ତ ପୂରା ଦୃଶ୍ୟର ଏକ ଛୋଟ ଅଂଶ ମାତ୍ର । ଆଖୁଚାଷ ଛଡ଼ା ଏକକ ସଂସ୍ଥା ଘୋଷଣା କରିଛନ୍ତି ଯେ ୱଣ୍ଡର୍ କେନାଲର ଦୁଇ କଡ଼ରେ ଅନେକ ପଞ୍ଚତାରକା ହୋଟେଲ, ଗଲ୍ଫ ପଡ଼ିଆ, ଜଳ କ୍ରୀଡ଼ା ଉଦ୍ୟାନ ତିଆରି କରାଯିବ । ହେଲେ ଏ ଯୋଜନାର ଯଥାର୍ଥତା କ'ଣ ତାହା ଚିନ୍ତା ମଧ୍ୟ କରିହେଉ ନାହିଁ । ସରକାରୀ କାରଣ ହେଲା ଯେ ପ୍ରକଳ୍ପ ଶେଷ କରିବା ପାଇଁ କେବଳ ଏହିସବୁଥିରୁ ହିଁ ଟଙ୍କା ଉଠାଇ ହେବ ।

କଚ୍ଛ ଓ ସୌରାଷ୍ଟ୍ରର ଲକ୍ଷ ଲକ୍ଷ ଲୋକଙ୍କ କଥା ଭାବିଲାରୁ ମୋତେ ସତରେ ବହୁତ କଷ୍ଟ ହେଉଛି । ଏ ପାଣିରୁ ତାଙ୍କ ପାଖରେ ଟୋପାଏ ବି ଯାଇ ପହଞ୍ଚିବ କି ନାହିଁ ସନ୍ଦେହ । ସବୁଠାରୁ ମୌଳିକ

ସମସ୍ୟା ହେଲା ନଈରେ ଯେତିକି ପାଣି ଥିବ ବୋଲି ଆଗରୁ ହିସାବ କରାଯାଉଥିଲା ମୋଟ ପ୍ରବାହ ତା'ଠାରୁ କମ୍ । ଦ୍ୱିତୀୟତଃ ନର୍ମଦା ସାଗର ବନ୍ଧ ତିଆରି ନ ହେଲେ ସର୍ଦ୍ଦାର ସରୋବରର ଜଳସେଚନ ପାଇଁ ଉପାଦେୟତା ଶତକଡ଼ା ୧୭ରୁ ୩୦ଭାଗ କମିଯିବ ।

ତୃତୀୟତଃ ୱଣ୍ଡର କେନାଲର କାର୍ଯ୍ୟଦକ୍ଷତା (ଜଳଭଣ୍ଡାରରୁ ଯାଉଥିବା ପାଣିର କେତେ ଭାଗ ଜମିରେ ପହଞ୍ଚେ) ମନକୁ ମନ ୬୦ ପ୍ରତିଶତ ବୋଲି ନିର୍ଦ୍ଧାରିତ କରାଯାଇଛି । କିନ୍ତୁ ଭାରତର ଜଳସେଚନ ପ୍ରକଳ୍ପମାନଙ୍କରେ ଗଳିଆରେ ପାଣି ବୋହିବା ଆଉ ବାଷ୍ପୀକରଣ ଆଦିକୁ ହିସାବକୁ ନେଲେ କେନାଲରେ ଛଡ଼ା ଯାଉଥିବା ପାଣିର ସର୍ବାଧିକ ଶତକଡ଼ା ୩୫ଭାଗ ହିଁ ଜମିରେ ଯାଇ ପହଞ୍ଚେ । ତେଣୁ ଧାର୍ଯ୍ୟ ଲକ୍ଷର ମାତ୍ର ଅଧେ ଜମି ହିଁ ଜଳସେଚିତ ହୋଇପାରିବାର ଯଥେଷ୍ଟ ଡର ଆସୁଛି । ଆଉ ତଳମୁଣ୍ଡର ଜମିରେ ତ ଆଗ ପାଣି ମାଡ଼ିବନି, ମାଡ଼ିବ ଉପରମୁଣ୍ଡରେ ଥିବା ଅଧା ଜମିରେ ।

ଚତୁର୍ଥ କଥା ହେଲା ଯେ କଚ୍ଛ ଓ ସୌରାଷ୍ଟ୍ର ପାଖରେ ଯାଇ ପହଞ୍ଚିବା ଆଗରୁ ୱଣ୍ଡର କେନାଲକୁ ୧୦ଟି ବଡ଼ ବଡ଼ ଚିନି କଳ, ଅନେକ ଗଲ୍‌ଫ ପଡ଼ିଆ କଡ଼ ଦେଇ ଯିବାକୁ ପଡ଼ିବ । ତା'ସହିତ ବାଟରେ ଏ ଦୁଇଟି ଜିଲ୍ଲା ପୂର୍ବରୁ ପଡ଼ିବ ବରୋଦା, ଅହମଦାବାଦ, ଖେଡା, ଗାନ୍ଧୀନଗର, ମେହସାନା ଭଳି ଜିଲ୍ଲାଗୁଡ଼ିକ । ଅଧିକ ସଂଖ୍ୟାର ପଟେଲମାନେ ଥିବା ଏବଂ ବହୁଳ ଭାବରେ ଅର୍ଥକରୀ ଫସଲ ବଢ଼ାଉଥିବା ଏହି ଜିଲ୍ଲା ସବୁର ରାଜନୈତିକ ଗୁରୁତ୍ୱ ବେଶ୍ ଅଧିକ । ଏହା ଭିତରେ ନିଜର ନିର୍ଦ୍ଦେଶନାମାକୁ ନିଜେ ଭାଙ୍ଗି ଆମର ଏକକ ସଂସ୍ଥା ବରୋଦା ସହରକୁ ବେଶ୍ ପରିମାଣର ପାଣି ଯୋଗାଇବା ବ୍ୟବସ୍ଥା କଲାଣି । ବରୋଦା ଏ କେନାଲରୁ ପାଣି ପାଇଲେ ଅହମଦାବାଦ ଏବଂ ଗୁଜୁରାଟର ରାଜନୈତିକ ଦୃଷ୍ଟିରୁ

ଗୁରୁତ୍ୱପୂର୍ଣ୍ଣ ଅନ୍ୟ ସହର ସବୁ କ'ଣ ବାଦ୍ ପଡ଼ିଯିବେ? ସେମାନେ ବି ପାଣିରୁ ନିଜର ଭାଗ ପାଇବା ନିଶ୍ଚିତ କରିନେବେ ।

ପଞ୍ଚମ କଥା ହେଲା ଯେ କୌଣସି ବାଟରେ ପାଣି ଯାଇ କଚ୍ଛ ଏବଂ ସୌରାଷ୍ଟ୍ରରେ ପହଞ୍ଚିଗଲେ ବି (ଯାହାର ସମ୍ଭାବନା ଶୂନ ପ୍ରତିଶତ) କାମ ସେଇଠି ସରୁନାହିଁ । ଏହି ପାଣିକୁ ସେ ଦୁଇ ଜିଲ୍ଲାର ୮୦୦୦ ଶୋଷିଲା ଗାଁର ଅସଂଖ୍ୟ ଶୋଷିଲା ଘରେ ବ୍ୟବସ୍ଥିତ ଭାବରେ ପହଞ୍ଚାଇବାକୁ ପଡ଼ିବ ।

ଏଠାରେ ଏ କଥା କହିରଖିଲେ ଭଲ ଯେ ଦୁନିଆରେ ପିଇବାକୁ ସ୍ୱଚ୍ଛ ପାଣି ପାଉନଥିବା ୧୦୦ କୋଟି ଲୋକଙ୍କ ମଧ୍ୟରୁ ୮୫ କୋଟି ଗାଁମାନଙ୍କରେ ହିଁ ରହନ୍ତି । କାରଣ ବିଶୋଧନ ବ୍ୟବସ୍ଥା, ପମ୍ପ, ନାଳ, ପାଇପ ଆଦିର ସାହାଯ୍ୟରେ ଗାଁମାନଙ୍କରେ ସ୍ୱଚ୍ଛ ପିଇବା ପାଣି ଯୋଗାଇବାର ଖର୍ଚ୍ଚ ବହୁତ ବେଶୀ । ଗାଁ ଲୋକଙ୍କୁ ପିଇବା ପାଣି ଯୋଗାଇବା ପାଇଁ କେହି ବଡ଼ ନଦୀବନ୍ଧ ତିଆରି କରନ୍ତି ନାହିଁ । ଏଥିପାଇଁ କେହି ସେ ପ୍ରକାରର ଖର୍ଚ୍ଚ ବହନ କରିପାରିବ ନାହିଁ ।

ମୋର୍ଶ କମିଟି ଗୁଜୁରାଟରେ ପହଞ୍ଚିଲା ପରେ ଦୂର ଗାଁମାନଙ୍କୁ ପାନୀୟ ଜଳଯୋଗାଣ ଦିଗରେ ଗୁଜୁରାଟ ସରକାରଙ୍କର ଆଗ୍ରହ ଦେଖି ଅତ୍ୟନ୍ତ ଖୁସି ହେଲେ । ଆଉ ତା'ପରେ ଜଳ ଯୋଗାଣ ଯୋଜନାର କାଗଜପତ୍ର ଦେଖିବା ପାଇଁ ମାଗିଲେ । ସରକାର ପାଖରେ ଏ ନେଇ ଖଣ୍ଡେ ମଧ୍ୟ କାଗଜ ନଥିଲା । ଏବେ ମଧ୍ୟ ନାହିଁ । କମିଶନ ତା'ପରେ ଯୋଜନା ପାଇଁ ଖର୍ଚ୍ଚ ଅଟକଳର ପରିମାଣ ବିଷୟରେ ପଚାରିଲେ । ସରକାରର ଫୁଲାଫାଙ୍କିଆ ଉତ୍ତର ହେଲା 'କେଇ ହଜାର କୋଟି' । ହେଲେ ବିଶେଷଜ୍ଞମାନଙ୍କ ମତରେ ଖର୍ଚ୍ଚ ନିହାତି କମ୍‌ରେ ୧୦୦ କୋଟି ଡଲାର ହେବ । ଅର୍ଥାତ୍ ପାଖାପାଖି ୫୦୦୦ କୋଟି ଟଙ୍କା । ଏ ପଇସା କେଉଁଠୁ ଆସିବ?

ହେଲେ ମୁଁ କି ତୁମେ ପଚାରିଲେ କେତେ ନ ପଚାରିଲେ କେତେ । ଉତ୍ତର କିଏ ଦେବ ନା କ'ଣ!

ଗଙ୍ଗାରୁ କଲିକତା ବନ୍ଦରକୁ ଜଳ ଯୋଗାଉଥିବା ଫରକ୍କା ବରାଜ୍ ଫଳରେ ନଈର ତଳମୁଣ୍ଡରେ ଥିବା ବାଙ୍ଗଲାଦେଶର ୪ କୋଟି ଲୋକଙ୍କ ପାଇଁ ପିଇବା ପାଣିର ଅଭାବ ଦେଖାଦେଇଛି । ଜାତୀୟତାବାଦ ଯେ କେଡ଼େ ହିସାବୀ ଭାବରେ ବର୍ବର ହୋଇପାରେ ଏହା ତା'ର ଉଦାହରଣ ।

ବନ୍ଧ ତିଆରି କରି ୪ କୋଟି ଲୋକଙ୍କଠାରୁ ପାଣି ଛଡ଼ାଇ ନିଅ । ପୁଣି ଆଉ ଗୋଟାଏ ରାକ୍ଷସକାୟ ବନ୍ଧ ତିଆରି କରି ୪ କୋଟି ଲୋକଙ୍କ ପାଖରେ ପାଣି ପହଞ୍ଚାଇବାର ବାହାନାରେ । ଏପରି ଲୋକମାନେ ଆମର ହର୍ତ୍ତାକର୍ତ୍ତା ଦଇବ ବିଧାତା । ଏମାନଙ୍କର କ୍ଷମତାରେ ଅଙ୍କୁଶ ଲଗାଇବ କିଏ ?



ମୁଁ ଉପତ୍ୟକାରେ ଭେଟିଥିବା ଶେଷ ଲୋକ ହେଲେ ଭାଇଜୀ ଭାଇ । ସେ ହେଉଛନ୍ତି ଉଣ୍ଡଓା ଗାଁର ଜଣେ ତଡ୍ୱି ଆଦିବାସୀ । ଉଣ୍ଡାଓା ଗାଁ ହେଲା ଓ୍ୱଣ୍ଡର କେନାଲ ଓ ତା'ର ୭୫,୦୦୦ କିଲୋମିଟର ଲମ୍ବା ଶାଖା ପ୍ରଶାଖା ତିଆରି ପାଇଁ ଜମି ଅଧିଗ୍ରହଣ ହୋଇଥିବା ପ୍ରଥମ ଗାଁଗୁଡ଼ିକ ଭିତରୁ ଗୋଟିଏ । ଭାଇଜୀ ତାଙ୍କର ୧୯ ଏକର ଜମିରୁ ୧୭ ଏକର ଜମି ହରାଇଛନ୍ତି । ବାକି ଜମିର ଛାତି ଚିରିକରି ଯାଇଛି

୭୦୦ ଫୁଟ ଚଉଡ଼ାର ଉଚ୍ଚା ତୀଖା କାନ୍ଥବାଲା ସେହି କେନାଲ, ଠିକ୍ ସାଇକେଲ ଦୌଡ଼ ପାଇଁ ଗଢ଼ାଯାଉଥିବା ଏକ ରାକ୍ଷସକାୟ ପଟି (ଭେଲୋଡ୍ରୋମ୍) ଭଳି ।

୭୫,୦୦୦ କି·ମି·ର ଏହି କେନାଲ ତନ୍ତ୍ର ୨୦୦,୦୦୦ରୁ ଅଧିକ ପରିବାରକୁ ପ୍ରଭାବିତ କରିବ । ଲୋକେ ନିଜର କୂଅ, ଗଛ ଆଦି କେନାଲ ତିଆରିରେ ହରାଇଛନ୍ତି । କେତେ ଜାଗାରେ କେନାଲ ଚାଷୀର ଘର ଓ ଜମିର ମଝିରେ ଯାଇଛି ଓ ଦୁହିଁଙ୍କୁ ଅଲଗା କରିଦେଇଛି । ଏହା ଫଳରେ ଘରୁ ଜମିକୁ ଯିବା ପାଇଁ ତାଙ୍କୁ କେନାଲ କୂଳେ କୂଳେ ଦୁଇ ତିନି କିଲୋମିଟର ଯାଇ ପୋଲରେ ପାରି ହେବାକୁ ପଡୁଛି ଏବଂ ଆର ପଟରେ ପୁଣି ସେତିକି ବାଟ ଫେରି ଜମିକୁ ଆସିବାକୁ ହେଉଛି । ପ୍ରାୟ ୨୩,୦୦୦ ପରିବାର ବା ଲକ୍ଷେ ଲୋକଙ୍କ ଉପରେ ଏହି ପ୍ରଭାବ ହେବ ଉତ୍କଟ । ଯେପରି ଭାଇଜୀ ଭାଇଙ୍କ ପରିବାର । ଏହି ପରିବାରଗୁଡ଼ିକ ସରକାରୀ ଭାବରେ 'ପ୍ରକଳ୍ପ ପ୍ରଭାବିତ' ନୁହନ୍ତି । ପୁର୍ନବାସ ପାଇଁ ସେମାନଙ୍କର କୌଣସି ଦାବି ସରକାର ମାନନ୍ତି ନାହିଁ ।

କେଭାଡ଼ିଆ କଲୋନୀରେ ରହୁଥିବା ନିଜର ପଡ଼ୋଶୀମାନଙ୍କ ପରି ଭାଇଜୀ ଭାଇ ମଧ୍ୟ ରାତାରାତି ନିଃସ୍ୱ ପାଲଟି ଯାଇଛନ୍ତି ।

ଭାଇଜୀ ଭାଇ ଓ ତାଙ୍କ ଲୋକମାନଙ୍କୁ ସରକାରୀ କ୍ୟାଲେଣ୍ଡର ପାଇଁ ଦାନ୍ତନେକୁଟି ହସି ଫଟୋ ଉଠାଇବାକୁ ପଡୁଛି । ରାଗିବାର ଅଧିକାର ମଧ୍ୟ ସେମାନଙ୍କଠାରୁ ଛଡ଼ାଇ ନିଆଯାଇଛି । ଯେଉଁ ଦେଶକୁ ସେମାନେ ନିଜର ବୋଲି କୁହନ୍ତି, ତା'ରି ନାଁରେ ତାଙ୍କୁ ପୋକମାଛି ଭଳି ଦଳିଚକଟି ଦିଆଯାଇଛି ।

ମୁଁ ତାଙ୍କ ଘରେ ପହଞ୍ଚିଲା ବେଳକୁ ସଂଧ୍ୟା ବେଶ୍ ଆଗେଇ ଗଲାଣି । ମିଞ୍ଜି ମିଞ୍ଜି ଆଲୁଅରେ ଆମେ ସମସ୍ତେ ଚଟାଣ ଉପରେ

ବସି ଖୁବ୍ ମିଠା ଚା' ପିଇଲୁ । ତାଙ୍କର କଥା ଶୁଣୁ ଶୁଣୁ ମୋତେ ହଠାତ୍ ଲାଗିଲା ଯେ ମୋ ଜୀବନରେ ଏସବୁ କିଛି ଆଗରୁ କେଉଁଠି ଘଟିଯାଇଛି । ମୋତେ କାହିଁକି ସେପରି ଲାଗିଲା ତା' ଥିଲା ମୋ କଳ୍ପନାର ବାହାରେ । ମୁଁ ନିଶ୍ଚିତ ଥିଲି ଯେ ମୁଁ ତାଙ୍କୁ ଆଗରୁ କେବେ ବି ଭେଟି ନାହିଁ । ତା'ପରେ ହଠାତ୍ ମୁଁ ବୁଝିଗଲି ସେହି ଅନୁଭବର କାରଣ । ତାଙ୍କୁ ମୁଁ ଚିହ୍ନି ପାରି ନଥିଲି, କିନ୍ତୁ ତାଙ୍କର କଥା ମୋର ପୂରା ମନେଥିଲା ।

ଦଶ ବର୍ଷରୁ ବେଶି ସମୟ ତଳେ ସେହି ଉପତ୍ୟକାରେ ଉଠା ଯାଇଥିବା ଏକ ପ୍ରାମାଣିକ ଚଳଚିତ୍ରରେ ମୁଁ ତାଙ୍କୁ ଦେଖିଥିଲି । ଏ ଦଶ ବର୍ଷ ଭିତରେ ସେ ଖୁବ୍ ଝଡ଼ିଯାଇଥିଲେ, ମୁହଁର ଦାଢ଼ିରେ ବୟସର ଛାପ ଜଣା ପଡୁଥିଲା । କିନ୍ତୁ ତାଙ୍କ କାହାଣୀର ବୟସ ବଢ଼ି ନଥିଲା । ତାହା ସେମିତି ଅରଖ ନୂଆ ଥିଲା, ସେଥିରେ ସେହି ପୁରୁଣା ଆବେଗ ଭରି ରହିଥିଲା । ସେ ଗପ ଶୁଣି ମୋତେ କାନ୍ଦ ମାଡ଼ିଲା । ଯେଉଁ ଧୈର୍ଯ୍ୟର ସହିତ ସେ ତାଙ୍କ କାହାଣୀ କହୁଥିଲେ ତାହା ଦେଖି ସବୁଠୁ ଅଧିକ କଷ୍ଟ ଲାଗିଲା । ମୁଁ ଜାଣୁଥିଲି ଯେ ସେ ନିଜର ଏହି କାହାଣୀ ଶହେ ଥର ଶହେ ଜଣ ଲୋକଙ୍କୁ କହି ସାରିଥିବେ । କହିଲା ବେଳେ



ବନ୍ଧ ନିକ୍ଷେପିତ
ଭାଇଜୀ ଭାଇ



**ଏଇଠି ଥିଲା ମୋ ସୁନା ସଂସାର! ଆଗରୁ ତାଙ୍କର ଘର ଥିବା ଜାଗାରେ ଛିଡ଼ାହୋଇ ଦେଖାଉଛନ୍ତି ଭାଇଜୀ ଭାଇ । ଏବେ ତାହା ଷ୍ଟର କେନାଲର ଭିତରେ । ଆଉ ସେ ପ୍ରାୟ ନିଃସ୍ୱ ।**

ସେ ଆଶା କରୁଥିବେ, ଭଗବାନଙ୍କୁ ପ୍ରାର୍ଥନା ଜଣାଉଥିବେ, ଯେ ଦିନେ ହୁଏତ ଉଣ୍ଡୁଆ ଗାଁ ଭିତର ଦେଇ ଯାଉଥିବା ଅଚିହ୍ନା ଲୋକଙ୍କ ଭିତରୁ କେହି ଜଣେ କାଳେ ତାଙ୍କ ଭାଗ୍ୟ ବଦଳାଇ ଦେବ । କାଳେ ସେ ଆଗନ୍ତୁକମାନଙ୍କ ଭିତରୁ କେହି ଜଣେ ହୋଇଥିବ ସ୍ୱୟଂ ଭଗବାନ!

ଭାଇଜୀ ଭାଇ, ତମକୁ କେବେ ରାଗ ଲାଗିବ, ଭାଇଜୀ ଭାଇ? ତମର ଧୈର୍ଯ୍ୟର ବନ୍ଧ କେବେ ଭାଙ୍ଗିବ? କେବେ ତମେ କହିବ 'ବହୁତ ହୋଇଗଲା' । ଆଉ ଯାହାବି ଅସ୍ତ୍ର ତୁମ ପାଖରେ ଅଛି ତାକୁ ହିଁ ଧରି ଯୁଦ୍ଧ ଆରମ୍ଭ କରିବ କେବେ? କେବେ ତମେ ଆମକୁ ତୁମର ପ୍ରବଳ ଅଜେୟ, ସର୍ବଗ୍ରାସୀ ପରାକ୍ରମ ଦେଖାଇବ? କେବେ ତମେ

ବୁଝିବ ଯେ ନିଜ ଚାରିପଟର ଲୋକଙ୍କୁ, ବ୍ୟବସ୍ଥାକୁ ବିଶ୍ୱାସ କରିବା କଥା ନୁହେଁ । କେବେ ତମେ ସେ ବିଶ୍ୱାସକୁ ଭାଙ୍ଗିବ? ନା ସେ ବିଶ୍ୱାସକୁ ଛାଡ଼ିଦେବ ତା'ର ବୋଝରେ ତୁମକୁ ଚାପି ଭାଙ୍ଗିଦେବାକୁ?

ଗୋଟିଏ ପଶୁକୁ ଧୀର କରିବାର ସବୁଠାରୁ ଭଲ ହେଲା ତା'ର ଅଙ୍ଗ ସବୁ ଭାଙ୍ଗି ଦେବା । ଗୋଟିଏ ଜାତିକୁ ଧୀର, ନମନୀୟ କରିବାର ବାଟ ହେଲା ସେ ଦେଶର ଲୋକଙ୍କୁ ଭାଙ୍ଗିଦେବା । ତାଙ୍କର ଇଚ୍ଛାଶକ୍ତିକୁ ଧ୍ୱଂସ କରିଦେବା । ସେ ଲୋକଙ୍କ ଜୀବନ ଉପରେ ତୁମର ଯେ ଅଖଣ୍ଡ ନିୟନ୍ତ୍ରଣ ରହିଛି ତାହା ତାଙ୍କୁ ଦେଖାଇଦେବା । ତାଙ୍କ ଆଗରେ ସ୍ପଷ୍ଟ କରିଦେବା ଯେ ତୁମେ ହେଲ ହର୍ତ୍ତା, କର୍ତ୍ତା, ଦଇବ ବିଧାତା - କିଏ ବଞ୍ଚିବ, କିଏ ମରିବ, କିଏ ଉପରକୁ ଉଠିବ, ଆଉ କିଏ ଖସିବ ସେ ସବୁର ହେଉଛ ତୁମେ ହିଁ ନିୟନ୍ତା । ତୁମର ଦକ୍ଷତାର ପ୍ରଦର୍ଶନ ମଧ୍ୟ କରିଦିଅ - ଦେଖାଇଦିଅ ତୁମେ କ'ଣ କରିପାରିବ, କେତେ ସହଜରେ ତାହା କରିପାରିବ ।

କେତେ ସହଜରେ ଗୋଟାଏ ବୋତାମ ଚିପିକରି ତୁମେ ପୃଥିବୀକୁ ଧ୍ୱଂସ କରିପାର । ଯୁଦ୍ଧ ଆରମ୍ଭ କରିପାର, ଶାନ୍ତି ଖେଳାଇପାର । ଗୋଟାଏ ନଈକୁ ଜଣଙ୍କଠାରୁ ଛଡ଼ାଇ ନେଇ ଆଉ କାହାଙ୍କୁ ଦାନ କରିପାର । ମରୁଭୂମିରେ ସବୁଜିମା ଭରିପାର, କେଉଁଠି ଗୋଟିଏ ଜଙ୍ଗଲ ସଫାକରି ଆଉ କେଉଁଠି ନୂଆ ଜଙ୍ଗଲଟିଏ ସୃଷ୍ଟି କରିପାର । ତୁମର ଖିଆଲ ବଳରେ ମାଟି, ଜଙ୍ଗଲ, ପାଣି, ପବନ ଆଦିର ଉପରେ ଲୋକଙ୍କ ପ୍ରାଚୀନ ବିଶ୍ୱାସଧାରା ଭାଙ୍ଗିବା ଅତି ସହଜ । ଏହି ବିଶ୍ୱାସ ହଜିଗଲା ପରେ ତାଙ୍କ ପାଖରେ ବାକି ରହିବ ବା କ'ଣ? କେବଳ ତୁମେ - ତାଙ୍କର ମାଲିକ, ସାଆନ୍ତ ।

ତୁମ ପାଖକୁ ସେମାନେ ଆସିବେ, କାରଣ ତୁମେ ହିଁ ଏବେ ତାଙ୍କର ସର୍ବସ୍ୱ । ତୁମକୁ ଘୃଣା କରୁଥିଲେ ବି ସେମାନେ ତୁମକୁ ଭଲ

ପାଇବାର ଅଭିନୟ କରିବେ । ତୁମ କଥା ଭଲକରି ଜାଣିଥିଲେ ବି ସେମାନେ ତୁମକୁ ବିଶ୍ୱାସ କରିବାକୁ ବାଧ୍ୟ ହେବେ । ତୁମେ ତାଙ୍କ ନିଶ୍ୱାସ ଛଡ଼ାଇ ନେଉଥିଲା ବେଳେ ବି ସେମାନେ ତୁମକୁ ଭୋଟ ଦେବେ । ତୁମେ ଯାହା ଦେବ ତାହା ହିଁ ପିଇବେ, ନିଶ୍ୱାସରେ ନେବେ । ଯେଉଁଠି ତୁମେ ତାଙ୍କ ଜିନିଷ ଫୋପାଡ଼ିଦେବ, ସେମାନେ ସେଇଠି ହିଁ ରହିବେ । ଏହିସବୁ କରିବା ପାଇଁ ସେମାନେ ବାଧ୍ୟ । କାରଣ ଏହାଛଡ଼ା ତାଙ୍କର ଗତ୍ୟନ୍ତର ନାହିଁ । ଫେରାଦ କରିବା ପାଇଁ ତୁମ ଉପରକୁ କେହି ନାହିଁ । ତୁମେ ତ ତାଙ୍କ ମା, ବାପ, ଓକିଲ, ଜଜ୍ ସବୁକିଛି । ତୁମେ ହିଁ ତାଙ୍କର ଦୁନିଆ, ତାଙ୍କ ଆଖିରେ କେବଳ ତୁମେ ହିଁ ଭଗବାନ ।

କ୍ଷମତା ବଳରେ କିଛି ଧ୍ୱଂସ କରି ସେ କ୍ଷମତାକୁ ବଢ଼ାଯାଏ । କିଛି ସୃଷ୍ଟି କରିବା ଦ୍ୱାରା ମଧ୍ୟ ସେ କ୍ଷମତାକୁ ଦୃଢ଼ତର କରିହୁଏ । କିଛି ଛଡ଼ାଇ ନେଲେ ଯେପରି କ୍ଷମତା ଦୃଢ଼ିଭୂତ ହୁଏ, କିଛି ଦେଇଦେଲେ ମଧ୍ୟ ସେପରି ହୁଏ । ହରାଇଥିବାର ଅସହାୟତା ଲୋକଙ୍କର ଶକ୍ତିହୀନତାକୁ ଯେତିକି ନିଶ୍ଚିତ କରେ, ପାଇଥିବା (ବା ପାଇଛନ୍ତି ବୋଲି ଭାବୁଥିବା) ଲୋକଙ୍କର ଦୟା ମଧ୍ୟ ସେତିକି କରେ ।

ଏହି ସାମ୍ପ୍ରତିକ କ୍ଷମତାଲିପ୍ସାର ଖୋଳ ନିଜକୁ ଲୁଚାଇ ରଖିଛି ଆଜିର ଗଣତାନ୍ତ୍ରିକ ଓ ଉଦାର ମନେ ହେଉଥିବା ସାମ୍ବିଧାନିକ ବ୍ୟବସ୍ଥାର ବିଭିନ୍ନ ଆଇନ୍ ଭିତରେ । ଏହି ଖୋଳକୁ ପିନ୍ଧିଛନ୍ତି ସେହି ପ୍ରତିନିଧିମାନେ, ଯେଉଁମାନେ ନିର୍ବାଚିତ ହୋଇଛନ୍ତି ନାଁକୁ ମାତ୍ର ସ୍ୱାଧୀନ ଲୋକଙ୍କ ଦ୍ୱାରା । ହେଲେ ମଣିଷ ସଭ୍ୟତାର ଇତିହାସରେ ଏପରି ସର୍ବଗ୍ରାସୀ କ୍ଷମତା କୌଣସି ରାଜା, ସମ୍ରାଟ, ସ୍ୱେଚ୍ଛାଚାରୀ ଶାସକ ବା ଏକଛତ୍ରବାଦୀର ହାତରେ ନଥିଲା ।

ଧୀରେ ଧୀରେ ଆମର ଅଣ୍ଟା ଭଙ୍ଗା ଯାଉଛି । ନଦୀ ନଦୀ କରି,

ଜଙ୍ଗଲ ଜଙ୍ଗଲ କରି, ପାହାଡ଼ ପାହାଡ଼ କରି, ବୋମା ବୋମା କରି, କ୍ଷେପଣାସ୍ତ୍ର କ୍ଷେପଣାସ୍ତ୍ର କରି ଆମକୁ ଭଙ୍ଗା ଚାଲିଛି ।

ଦେଶର 'ବିକାଶ' ପାଇଁ ବଡ଼ ବନ୍ଧ ଯାହା ଦେଶର ଯୁଦ୍ଧ ବ୍ୟବସ୍ଥାରେ ପରମାଣୁ ବୋମା ତାହା । ଦୁଇଟିଯାକ ଗଣସଂହାର ପାଇଁ ଅସ୍ତ୍ର । ଦୁଇଟିଯାକ ହେଉଛି ନିଜ ଲୋକଙ୍କୁ ଦବାଇ ରଖିବା ପାଇଁ ସରକାରମାନଙ୍କ ହାତରେ ଅସ୍ତ୍ର । ଦୁଇଟିଯାକ ବିଂଶ ଶତାବ୍ଦୀର ସଙ୍କେତ । ଏପରି ଏକ ସମୟର ସଙ୍କେତ ଯେବେ କି ମଣିଷର ବୁଦ୍ଧି ନିଜର ଆତ୍ମରକ୍ଷାର ପ୍ରବୃତ୍ତିକୁ ଅତିକ୍ରମ କରି ଯାଇଛି । ଆମର ସଭ୍ୟତା ନିଜକୁ ଆକ୍ରମଣ କରୁଥିବାର ମାରାତ୍ମକ ସୂଚକ ହେଉଛନ୍ତି ଏହି ଦୁଇ ସଙ୍କେତ । ମଣିଷ ଓ ତା'ର ବାସସ୍ଥଳୀ ପୃଥିବୀ ଭିତରେ ଥିବା କଟି ଯାଉଥିବା ସମ୍ପର୍କର ପ୍ରତିଛବି ହେଉଛନ୍ତି ଏହି ଦୁଇ ସଙ୍କେତ । କେବଳ ସମ୍ପର୍କ କଟିବାର ନୁହେଁ, ବୁଝାମଣା ଓ ମାନସିକ ବନ୍ଧନ ତୁଟିଯିବାର ପ୍ରତିଫଳନ । ଏହା ମଣିଷର ବୋଧଶକ୍ତିକୁ ଗୋଳମାଳ କରିଦେଉଛି । ଏହା ଫଳରେ ଅଣ୍ଡା ଓ କୁକୁଡ଼ା, କ୍ଷୀର ଓ ଗାଈ, ଖାଦ୍ୟ ଓ ଜଙ୍ଗଲ, ପାଣି ଓ ନଈ, ପବନ ଓ ଜୀବନ ଏବଂ ପୃଥିବୀ ଓ ମଣିଷର ଅସ୍ତିତ୍ୱ ଆଦିକୁ ମଣିଷ ଆଉ ଯୋଡ଼ି ପାରୁନାହିଁ ।

ସେହି ଓଲଟ ପାଲଟ ହୋଇ ଯାଇଥିବା ବୋଧଶକ୍ତିକୁ ଆମେ ସଜାଡ଼ି ପାରିବା କି? ସେ ସବୁ କିଛିକୁ ପୁଣି ଥରେ ମନେପକାଇ ପାରିବା କି? ନିଜ ଚାରିପଟର ଦୁନିଆକୁ ମନ ପ୍ରାଣ ଦେଇ ପୁଣିଥରେ ଭଲପାଇ ପାରିବା କି?

ହୁଏତ ପାରିବା । ଇଞ୍ଚ ଇଞ୍ଚ କରି । ବୋମା ବୋମା କରି । ବନ୍ଧ ବନ୍ଧ କରି । ହୁଏତ ପ୍ରତିଟି ଯୁଦ୍ଧକୁ ତା'ପାଇଁ ନିର୍ଦ୍ଦିଷ୍ଟ ଧାରାରେ ଲଢ଼ିକରି । ସେ ଲଢ଼େଇର ଆରମ୍ଭ ଆମେ କରିପାରିବା ନର୍ମଦା ଉପତ୍ୟକାରେ ।

ଆସନ୍ତା ଜୁଲାଇ ମାସରେ ବିଂଶ ଶତାବ୍ଦୀର ଶେଷ ବର୍ଷା ଋତୁ ଆସିବ । ସେହି ବର୍ଷାରେ ସର୍ଦ୍ଦାର ସରୋବର ଜଳଭଣ୍ଡାରରେ ପାଣି ଭରିବ ଏବଂ ଲୋକଙ୍କର ଘର ଜମି ଆଦି ବୁଡ଼ାଇବା ଆରମ୍ଭ କରିବ । କିନ୍ତୁ ନର୍ମଦା ଉପତ୍ୟକାରେ ଲଢୁଥିବା ସେହି କ୍ଳାନ୍ତ, ଦୀନ ସେନା ବାହିନୀ ଶପଥ ନେଇଛି ଯେ ବୁଡ଼ିବା ଆରମ୍ଭ କଲେ ବି ସେମାନେ ନିଜର ଘରବାଡ଼ି ଛାଡ଼ି ଯିବେ ନାହିଁ । ଆପଣ ବନ୍ଧକୁ ଭଲପାଇ ପାରନ୍ତି କିମ୍ବା ଘୃଣା କରିପାରନ୍ତି । ଆପଣ ବନ୍ଧ ତିଆରିକୁ ସମର୍ଥନ କରିପାରନ୍ତି କିମ୍ବା ବିରୋଧ କରିପାରନ୍ତି । କିନ୍ତୁ, ସେ ଯାହା ହେଉନା କାହିଁକି, ଏସବୁ ପାଇଁ କେତେ ମୂଲ୍ୟ ଦେବାକୁ ପଡୁଛି ତାହା ଆପଣ ବୁଝିବା ଅତି ଜରୁରୀ । ଆହୁରି ମଧ୍ୟ ଆପଣଙ୍କର ସାହସ ରହିବା ଉଚିତ, ଦେଖିବା ପାଇଁ ଯେ ଏସବୁର ମୂଲ୍ୟ କିଏ ଦେଉଛି ଏବଂ କିପରି ଏବଂ ସେସବୁର ହିସାବ ଛିଣ୍ଡୁଛି କିପରି ।

ଆମର ମୂଲ୍ୟ । ଆମର ହିସାବ । ସେମାନଙ୍କର ନୁହେଁ ।

ତା'ହେଲେ ମୁଁ ଆପଣଙ୍କୁ ସେଇଠି ହିଁ ଭେଟିବି । ଆସିବେ ନିଶ୍ଚୟ ।

**ଅରୁନ୍ଧତୀ ରାୟ**

ଏପ୍ରିଲ ୧୯୯୯









# ଆମେ ବୁଡ଼ିବୁ ପଛେ, ହଟିବୁ ନାହିଁ !

(ମଧ୍ୟ ପ୍ରଦେଶର ଝାବୁଆ ଜିଲ୍ଲାର ଜଳସିନ୍ଧି ଗାଁର ବାୱା ମାହାଲିଆ ମୁଖ୍ୟମନ୍ତ୍ରୀ ଦିଗ୍‌ବିଜୟ ସିଂହଙ୍କୁ ୧୯୯୪ରେ ଲେଖିଥିବା ଚିଠିର କିଛି ଅଂଶ)

ଶ୍ରୀ ଦିଗ୍‌ବିଜୟ ସିଂହ ମହୋଦୟ,

ଆମେ, ଜଳସିନ୍ଧି ଗାଁର ଲୋକମାନେ, ହେଉଛୁ ନଈକୂଳିଆ ଲୋକ । ମହାନ ନର୍ମଦାର ତୀରରେ ଆମ ଘର । ଏହି ବର୍ଷ ଆମର ଗାଁ ହେବ ମଧ୍ୟପ୍ରଦେଶର ପ୍ରଥମ ଗାଁ ଯାହା ସର୍ଦ୍ଦାର ସରୋବର ବନ୍ଧ ଯୋଗୁ ପାଣିରେ ବୁଡ଼ିବ । ଆମେ ଜୀବନ ଦେବୁ ପଛେ ଆମ ଗାଁ ଛାଡ଼ି ଯିବୁନାହିଁ । ପାଣି ଯେବେ ଆମ ଗାଁରେ ପଶିବ, ଯେତେବେଳେ ଆମର କ୍ଷେତ ଘର ସବୁ ପାଣିରେ ବୁଡ଼ିବ, ଆମେ ମଧ୍ୟ ସେଥିରେ ବୁଡ଼ିବୁ – ଏହା ହେଉଛି ଆମର ଦୃଢ଼ ସଂକଳ୍ପ ।

ଜଳସିନ୍ଧି ଗାଁର ଆଦିବାସୀ ଚାଷୀମାନେ ବୁଡ଼ିମରିବା ପାଇଁ କାହିଁକି ନିଜକୁ ପ୍ରସ୍ତୁତ କରୁଛନ୍ତି, ତାହା ଆପଣଙ୍କୁ ଜଣାଇଦେବା ପାଇଁ ଆମେ ଏହି ଚିଠିଟି ଲେଖୁଛୁ ।

ଆପଣ, ଏବଂ ଅନ୍ୟ ସବୁ ସହରୀ ଲୋକମାନେ, ଭାବନ୍ତି ଯେ ଆମ ଭଳି ବଣପାହାଡ଼ରେ ରହୁଥିବା ଲୋକମାନେ ଦୀନ ଓ ବଣମଣିଷଙ୍କ ଭଳି ପଛୁଆ । 'ଗୁଜୁରାଟର ସମତଳ ଭୂମିକୁ ଯାଅ,

ତେବେ ତୁମର ଭାଗ୍ୟ ଖୋଲିଯିବ । ତୁମର ଉନ୍ନତି ହେବ' ଏହା ହେଉଛି ଆମ ପାଇଁ ଆପଣମାନଙ୍କର ଉପଦେଶ । ଯଦି ଏହା ସତ ଯେ ଗୁଜୁରାଟରେ ଆମର ଅବସ୍ଥା ସୁଧୁରିଯିବ, ତେବେ ଆମେ ସେଠାକୁ ଯିବାକୁ ରାଜି ନୋହୁଁ କାହିଁକି?

ପୁରୁଷ ପୁରୁଷ ଧରି ଆମେ ଜଙ୍ଗଲରେ ଚଳୁଛୁ । ଜଙ୍ଗଲ ହେଉଛି ଆମର ସାହୁକାର ଓ ବ୍ୟାଙ୍କ । ଅସୁବିଧା ସମୟରେ ଆମେ ଜଙ୍ଗଲକୁ ଯାଉ । ତା'ର କାଠରୁ ଆମେ ଘର ତିଆରି କରୁ । ତା'ର ଝାଟି ଓ ଲଟିରୁ ଆମେ ତାଟି ବୁଣୁ । ସେହି ଜଙ୍ଗଲରୁ ଆମେ ତିଆରି କରୁ ଝୁଡ଼ି



ଭଜସିନ୍ଧି ଗାଁର ବାୱା ମାହାଲିଆ, ଯାହାଙ୍କ ସାହସ ଓ ଦୃଢ଼ମନ ସେହି ଗାଁକୁ ବନ୍ଧବିରୋଧୀ ଆନ୍ଦୋଳନର ପ୍ରାଣକେନ୍ଦ୍ର କରି ତୋଳିଛି । ତାଙ୍କ ଘର ଆଗରେ ଝୁଲୁଛି ଏହି ଲେଖାଟି - 'ଆମ ଗାଁରେ ଆମର ଶାସନ । ଯେଉଁ ସରକାର ଆମକୁ ବୁଡ଼ାଇ ମାରିବାକୁ ବସିଛି, ତାକୁ ଆମେ ଗାଁରେ ପଶିବାକୁ ଦେବୁନାହିଁ । ଆମର ସାହସ ତୁମ ବନ୍ଧର ଦମ୍ଭଠାରୁ ଟିକିଏ ବି ଊଣା ନୁହେଁ । ଆମେ ମରିବୁ ପଛକେ ହଟିବୁ ନାହିଁ ।'

ଓ ଖଟ, ଲଙ୍ଗଳ ଓ ଯୁଆଳି, ଏବଂ ଆହୁରି କେତେ କ'ଣ ଉପଯୋଗୀ ଜିନିଷ । ଅନେକ ପ୍ରକାରର ଘାସ ଆମେ ଜଙ୍ଗଲରୁ ପାଉ; ଆଉ ଖରାଦିନେ ଘାସ ଶୁଖିଗଲେ ବି ଆମକୁ ପତ୍ର ମିଳେ । ଯଦି ଦୁର୍ଭିକ୍ଷ ଆସେ ଆମେ କନ୍ଦା ଓ ଅନ୍ୟ ମୂଳ ଖାଇ ବଞ୍ଚିଯାଉ । ଆମେ ରୋଗରେ ପଡ଼ିଲେ ଆମର ବଇଦ ଭାଇ ଜଙ୍ଗଲର ପତ୍ର, ମୂଳ, ଛେଲି ଆଦି ଦେଇ ଆମକୁ ଭଲ କରିଦିଏ । ଜଙ୍ଗଲରୁ ଆମେ ଅଠା, କେନ୍ଦୁ ପତ୍ର, ବାହାଡ଼ା, କରଞ୍ଜ ଓ ମହୁଲ ଆଦି ଗୋଟାଇ ବିକ୍ରି କରୁ । ଜଙ୍ଗଲ ହେଉଛି ଆମର ମା ଭଳି; ତାହାରି କୋଳରେ ଆମେ ବଢ଼ିଆସିଛୁ । ତା'ର କ୍ଷୀର ଖାଇ କିପରି ବଞ୍ଚିବାକୁ ହୁଏ ତାହା ଆମେ ଜାଣିଛୁ । ଜଙ୍ଗଲର ପ୍ରତିଟି ଗଛ, ବୁଦା ଓ ଘାସର ନାଁ ଆମେ ଜାଣିଛୁ; ସେସବୁ କେଉଁ କାମରେ ଲାଗେ ତାହା ବି ଜାଣିଛୁ । ଜଙ୍ଗଲ ନଥିବା ଜାଗାରେ ରହିବାକୁ ଆମକୁ ଯଦି ବାଧ୍ୟ କରାଯାଏ, ତେବେ ଯୁଗ ଯୁଗ ଧରି ସଞ୍ଚି ରଖିଥିବା ଆମର ଏହି ଜ୍ଞାନ ମୂଲ୍ୟହୀନ ହୋଇଯିବ ଏବଂ ଧୀରେ ଧୀରେ ଆମେ ତାହା ପାଶୋରି ଦେବୁ ।

ନଦୀ ମଧ୍ୟ ଆମର ପୁଷ୍ଟିସାଧିନୀ । ନର୍ମଦାର ଗର୍ଭରେ ଅନେକ କିସମର ମାଛ ଅଛନ୍ତି । ଅବେଳାରେ କେହି କୁଣିଆ ପହଞ୍ଚିଲେ ମାଛ



ହିଁ ତାଙ୍କର ଆହାର ହୁଏ । ନଈ ତା'ର ଉପର ମୁଣ୍ଡରୁ ପଟୁ ବହି ଆଣେ । ଏଥିରେ ଉର୍ବର ହେଉଥିବା ନଦୀତଟରେ ଆମେ ଶୀତଦିନିଆ ମକା ଓ ଜଅ ଏବଂ ଅନେକ ପ୍ରକାରର ତରଭୁଜ ଚାଷ କରୁ । ଆମର ପିଲାମାନେ ନଈକୂଳରେ ଖେଳନ୍ତି, ନଈରେ ପହଁରନ୍ତି ଓ ଗାଧାନ୍ତି । ବର୍ଷ ସାରା ଆମର ଗାଈଗୋରୁ ସେ ନଈର ପାଣି ପିଅନ୍ତି, ସେ ନଈ କେବେ ଶୁଖେ ନାହିଁ । ସେ ନଈର କୋଳରେ ଆମେ ସନ୍ତୋଷଭରା ଜୀବନ ବିତାଉ । କେତେ ପୁରୁଷ ଧରି ଆମେ ଏଠାରେ ରହିଛୁ; ତେଣୁ ସେ ମହାନ ନଦୀ ଏବଂ ଜଙ୍ଗଲ ଉପରେ ଆମର କିଛି ଅଧିକାର ରହିଛି । ସେ ଅଧିକାରକୁ ଆପଣ ମାନୁ ନାହାନ୍ତି କି ?

... ଜଙ୍ଗଲ ଓ ନଈରେ ଜୀବନ ବିତାଇଲା ପରେ ଆମେ କିପରି ସହରରେ ବା ସମତଳ ଭୂମିରେ ଚଳିବୁ ? ଆପଣମାନେ ଅଲଗା ଅଲଗା ଘରେ ରୁହନ୍ତି । ପଡ଼ୋଶୀଙ୍କ ସୁଖ ଦୁଃଖକୁ ଏଡ଼ାଇଯା'ନ୍ତି । ଆମେ ଆମ ସମ୍ପ୍ରଦାୟ ସାଙ୍ଗରେ, ବନ୍ଧୁବାନ୍ଧବଙ୍କ ସାଙ୍ଗରେ, ଆମର ପରିବାର ସାଙ୍ଗରେ ଚଳୁ । ଆମେ ସମସ୍ତେ ମିଶିକରି କାମ କରୁ ଓ ଦିନକରେ ଘରଟିଏ ତୋଳିଦେଉ । କ୍ଷେତରୁ ଅଗଛା ବାଛୁ, ଆଉ ଯାହା ବି କାମ ପଡ଼େ ସବୁ ମିଳିମିଶି କରିଦେଉ । ଗୁଜୁରାଟରେ କିଏ ଆମକୁ ହାତ ବଢ଼ାଇବ, କାମକୁ ହାଲୁକା କରିବା ପାଇଁ କିଏ ଆମ ସହିତ ମିଶିଯିବ । ବଡ଼ ଘରର ଲୋକମାନେ କ'ଣ ଆସି ଆମ ଖେତରେ ଲାଗିବେ, ନାଁ ଆମ ଘର ତୋଳିଦେବେ ? ଯଦି ଗୁଜୁରାଟରେ ଦୁଃଖ ବା ଅସୁବିଧାରେ ପଡୁ, ଆମେ କାହା ଆଗରେ ସେକଥା କହିବୁ ? ଆପଣ ତ ଆମକୁ ବସ୍ ଖର୍ଚ୍ଚ ଦେଇ ଆମ ପୁରୁଣା ଗାଁକୁ ଫେରାଇ ଦେବେ ନାହିଁ । ଦେବେ କି ?

ଗୁଜୁରାଟରେ ଜାଗା ନେବା ପାଇଁ ଆପଣ ଆମକୁ କହୁଛନ୍ତି ।

ଆପଣ କହୁଛନ୍ତି ଯେ ଆମର ନେତାମାନେ ଆମକୁ ଉସ୍‌କାଉଛନ୍ତି, ଆମେ ତାଙ୍କ କଥା ଶୁଣିବା ଉଚିତ ନୁହେଁ । ଆମେ ଆମ ନେତାମାନଙ୍କ ଦ୍ୱାରା ପ୍ରଭାବିତ ହେଉନାହୁଁ । ଆମେ ପ୍ରଭାବିତ ହେଉଛୁ ଆମର ଭୂଇଁ, ଆମର ନଈ, ଆମର ଜଙ୍ଗଲ ଓ ଆମର ଗୋରୁଗାଈଙ୍କ ଦ୍ୱାରା । ସେହିମାନେ ହିଁ ଆମକୁ ବାଟ କଢ଼ାଉଛନ୍ତି ।

ଆପଣ ଆମକୁ କହୁଛନ୍ତି ଗୁଜୁରାଟରେ ଜାଗା ନେବା ପାଇଁ । କ୍ଷତିପୂରଣ ନେବା ପାଇଁ ଆପଣ ଆମକୁ କହୁଛନ୍ତି । ଆମର ଘରଡିହ, କ୍ଷେତ ବା ବାଡ଼ିର ଗଛ ସବୁ ପାଇଁ କ୍ଷତିପୂରଣ । ହେଲେ ଆମ ଜଙ୍ଗଲ ହରାଇବାର କ୍ଷତିର ଭରଣା କିପରି କରିବେ ? ଆମର ନଦୀର – ତା'ର ମାଛ, ତା'ର ପାଣି, ତା'ର କୂଳରେ ବଢୁଥିବା ପରିବାପତ୍ର ଏବଂ ତା'ର ପାଖରେ ବଞ୍ଚିବାରେ ଆମର ଆନନ୍ଦ ଆଦିର – ପ୍ରତିବଦଳରେ କ'ଣ ବା ଦେବେ । ଏସବୁର ଦର କେତେ ? ଆମ ଦିଅଁ ଦେବତା ଓ ଆମ ବନ୍ଧୁବାନ୍ଧବଙ୍କ ସହାୟତା – ଏସବୁର ମୂଲଚାଲ କିପରି କରିବେ ? ଆମର ଆଦିବାସୀ ଜୀବନ – ଆପଣଙ୍କ ହିସାବରେ ତା'ର ମୂଲ୍ୟ କେତେ ହେବ ?

ଗୁଜୁରାଟରେ ସେ ଜମି ଆମ ପାଇଁ ଗ୍ରହଣୀୟ ନୁହେଁ । ଆପଣଙ୍କର କ୍ଷତିପୂରଣ ଆମ ପାଇଁ ଗ୍ରହଣୀୟ ନୁହେଁ । ଆମେ ନର୍ମଦାର ଗର୍ଭରୁ ଜନ୍ମ ହୋଇଛୁ । ଆମେ ତା'ର କୋଳରେ ମରିବାକୁ ଡରିବୁ ନାହିଁ । ବର୍ଷାଦିନ ଆଗରୁ ଖରାଦିନରେ ହିଁ ଆମର ଗାଁରେ ପାଣି ଭରିଯିବ ଏବଂ ଆମେ ବୁଡ଼ିଯିବୁ ।

***ହେଲେ, ଆମେ ବୁଡ଼ିମରିବୁ ପଛେ ଏଠୁ ହଟିବୁ ନାହିଁ ।***

ବାୱା ମାହାଲିଆ

# ବେଦନା ଓ ଆଶାର ଧୁନ୍

ବନ୍ଧ ଆସୁଛିରେ ବନ୍ଧ ଆସୁଛି
କ୍ଷେତ, ଘର, ଆଉ ଗାଁ ବୁଡୁଛି ।

ବନ୍ଧର ନାଁ ଓ ଖେଳଟି ବଡ଼
ବିଜୁଳି ତାହାର କିଏସେ ପାଇବ
କ୍ଷେତକୁ କାହାର ପାଣି ସେ ବୋହିବ
ଆମ ଆଖିରେ ସେ ଭରୁଛି ଲୁହ ।
ଆସୁଛି ସେ ବନ୍ଧ କାହିଁକି କୁହ !

ବନ୍ଧ ପାଣି ଯେବେ ଆସିବ ମାଡ଼ି,
ମାଟିକୁ କାମୁଡ଼ି ରହିବୁ ଆମେରେ
ବନିବୁନି ବୋକା ବାବୁ କଥାରେ ।

ଗାଁରେ ଗାଁରେ ମିଳିଛି ମନ
ଏକାଠି ହୋଇଛୁ ବଢ଼ିଛି ଟାଣ
ଦେଖ ଦେଖ ବନ୍ଧ ହଟି ଯାଉଛି
କ୍ଷେତ, ଘର, ଆଉ ଗାଁ ହସୁଛି!

୧୯୮୭ ବେଳରୁ ନର୍ମଦା ପାଖର ଆଦିବାସୀ ଗାଁମାନଙ୍କରେ ବୋଲା ଯାଉଥିବା ଗୀତ *'ଧାରନ୍ ଆଭେୟା ରେ ଧାରନ୍ ଆଭେୟା, ଘର୍ ଖେତ୍ ନି ଗାଭ୍ ଭି ଡୁବେୟା'* । ସଞ୍ଜୟ ସାଙ୍ଘଭୀଙ୍କ ଦି **ରିଭର୍ ଆଣ୍ଡ ଲାଇଫ୍** (ଆର୍ଥକେଆର୍ ପ୍ରକାଶନ) ବହିରେ ଥିବା ଇଂରାଜୀ ରୂପରୁ ମୁକ୍ତ ଭାଷାନ୍ତର ।

# ସୃଜନିକା

ସୃଜନିକାର ବିଭିନ୍ନ ଲକ୍ଷ ଭିତରେ ରହିଛି - ସମାଜରେ ବୈଜ୍ଞାନିକ ଦୃଷ୍ଟିକୋଣ, ମୌଳିକ ଚିନ୍ତାଧାରା ଓ ସୃଜନଶୀଳତାର ବିକାଶ, ବିଜ୍ଞାନକୁ ଉଦ୍ଦୀପନାମୂଳକ କରିବା ଏବଂ ବିଜ୍ଞାନର ବିଭିନ୍ନ ଦିଗ ଓ ସାମାଜିକ ପ୍ରଭାବ ବିଷୟରେ ସଚେତନ କରିବା, ଶିକ୍ଷା, ବିଶେଷ କରି ବିଜ୍ଞାନ ଶିକ୍ଷାର ନୂଆ ଦିଗ ଖୋଜି ତାକୁ ନିତିଦିନିଆ ଜୀବନ ସହ ଯୋଡ଼ିବା । ସୃଜନିକାର ଚିନ୍ତାଧାରାକୁ ବାସ୍ତବ ରୂପ ଦେଉଥିବା ବିଭିନ୍ନ ମାଧ୍ୟମ ଭିତରେ ରହିଛି - ଶିକ୍ଷା ଓ ବିଜ୍ଞାନକୁ ଆଗ୍ରହଜନକ କରିବା ପାଇଁ ବିଭିନ୍ନ ପ୍ରକଳ୍ପ ଓ ସାଧନ ସାମଗ୍ରୀର ବିକାଶ ଏବଂ ବିତରଣ, ପିଲା, ଶିକ୍ଷକ ଓ କର୍ମୀଙ୍କ ପାଇଁ କର୍ମଶାଳା ଓ ଶିବିର, ଜନ ସାଧାରଣଙ୍କ ପାଇଁ ଆଲୋଚନା ଏବଂ ବିଭିନ୍ନ ପ୍ରକାଶନ ।

ସୃଜନିକାର ଏକ ମୁଖ୍ୟ ପ୍ରକାଶନ ହେଉଛି ବିଜ୍ଞାନ **ତରଙ୍ଗ ପତ୍ରିକା** । ୧୯୮୯ରୁ ନିୟମିତ ଭାବରେ ପ୍ରକାଶିତ ହେଉଥିବା ଏହି ପତ୍ରିକାର ଲକ୍ଷ ହେଉଛି ତଥ୍ୟ, ଆଲୋଚନା ଏବଂ ପ୍ରୟୋଗ ମାଧ୍ୟମରେ ବିଜ୍ଞାନର ପୂର୍ଣ୍ଣାଙ୍ଗ ଉପସ୍ଥାପନା । ସ୍କୁଲ, କଲେଜ ପିଲା ଓ ଜନସାଧାରଣଙ୍କ ପାଇଁ ଏକ ପଠନ ସାମଗ୍ରୀ ଏବଂ ଶିକ୍ଷକ ଓ ବିଜ୍ଞାନ କର୍ମୀମାନଙ୍କ ପାଇଁ ଏକ ସାଧନ ପୁସ୍ତିକା ଭାବରେ ଏହା କାମ ଦେଇଥାଏ ।

**ଯୋଗାଯୋଗ:** **'ସୃଜନିକା'**,
**ଡାଗମରା, ଡାକ: ଖଣ୍ଡଗିରି,**
**ଭୁବନେଶ୍ବର ୭୫୧ ୦୩୦ ।**
**ଫୋନ୍:** **(୦୬୭୪) ୨୩୫୦ ୬୬୪**

